# ଜୀବନ ବହୁରୂପୀ

ଉମାକାନ୍ତ ମହାପାତ୍ର



ଲାର୍ନ ବୁକ୍ସ

# ଜୀବନ ବହୁରୂପୀ

ଉମାକାନ୍ତ ମହାପାତ୍ର

ପ୍ରକାଶକ
ଲାର୍କ ବୁକ୍ସ
ଭୁବନେଶ୍ୱର-୭୫୧୦୦୧

ପ୍ରଥମ ପ୍ରକାଶ
୧୯୯୭

ପ୍ରଚ୍ଛଦ
ଅସୀମ୍ ବସୁ

ମୁଦ୍ରଣ
ଓଁକାର
ଆଚାର୍ଯ୍ୟବିହାର, ଭୁବନେଶ୍ୱର

ମୂଲ୍ୟ- ପଞ୍ଚଷଠି ଟଙ୍କା ମାତ୍ର

**JEEVAN BAHURUPI**

By
Umakanta Mahapatra

Published by
**LARK BOOKS**
Bhubaneswar - 751 001

Ist Edition-1997

Cover
Ashim Basu

Printed at
**Omkar**
Acharya Vihar, Bhubaneswar

Rupees Sixtyfive Only

**ISBN - 81 - 7375 - 038 - 6**

# ଲେଖକ ଆଡୁ ପଦେ

ମୁଁ ଗଳ୍ପ ଲେଖକ ବୋଲି ନିଜକୁ କେବେ ଭାବିନାହିଁ । କାରଣ ଗୋଟିଏ କାହାଣୀ ନିଜ ମନରୁ ସୃଷ୍ଟି କରି ପାରିବାର କ୍ଷମତା ମୋର ଅଛି ବୋଲି ମୋର ମନେ ହୁଏ ନାହିଁ । ଗଳ୍ପ ଅର୍ଥାତ୍ କଥାବାର୍ତ୍ତା ବା ଏକ ଉପାଖ୍ୟାନ ଶୁଣିବା । ସେହି ଅର୍ଥରେ ଆମ ଦେଶରେ ଆଗେ ଗଳ୍ପସାଗର ବା କଥକମାନେ ଥିଲେ ଏବଂ ସେମାନେ କାହାଣୀ କହୁଥିଲେ, ନିଜ ମନରୁ ଉଦ୍‌ଭାବନା କରୁନଥିଲେ । ମୁଁ ସେହି ଅର୍ଥରେ କଥକ ମାତ୍ର । ଗଳ୍ପର ବିଷୟବସ୍ତୁ ଅଧିକାଂଶ ନିଜେ ଦେଖା, ନିଜେ ଅଙ୍ଗେ ନିଭେଇଥିବା । ସେହି କଞ୍ଚା ପରିବା ଓ ମାଂସକୁ ନିଜର କଳ୍ପନାର ନିଆଁରେ, ଭାଷା ଇତ୍ୟାଦିର କିଛି ମସଲା ଦେଇ ରନ୍ଧା । ମୋର କଳ୍ପନାର ଦଉଡ଼ କଞ୍ଚାକୁ ସିଝେଇବା ପର୍ଯ୍ୟନ୍ତ, ଅର୍ଥାତ୍ ଘଟଣା ବା ବ୍ୟକ୍ତିଟିକୁ ପାଠକଙ୍କର ଗ୍ରହଣଯୋଗ୍ୟ କରିବା ପର୍ଯ୍ୟନ୍ତ । ଯେପରି ସୁରତରଙ୍ଗିଣୀ ଗଳ୍ପରେ ଗୀତର ଆସରରେ ରମେଶ ପ୍ରକୃତରେ ମୁଁ । କିନ୍ତୁ ଠୁମରୀର ବୋଲଟି ମୁଁ ଆଉ ଏକ ସ୍ଥାନରେ ପଢ଼ିଥିଲି ଏବଂ ବନଓ୍ୱାରୀ ଓ ରାଧାର ସମ୍ପର୍କ ବିଷୟରେ ସେହି ବହିରେ ଆଲୋଚନା ହୋଇଥିଲା । କେବଳ ରମୁର ବାଳିକା ପ୍ରିୟା କାଳ୍ପନିକ । ବା ନ ହୋଇଥାଇ ପାରେ । ପିଲାଦିନ କଥା କଣ ଆଉ ଏତେ ମନେ ଅଛି ? କାଳେ ଅବଚେତନ ମନରେ କିଏ ଛପି ଯାଇଥିବ । ସେହିପରି ବହ୍ନିଶିଖା ଜଣେ ବନ୍ଧୁଙ୍କର ଅଭିଜ୍ଞତା ଓ ଦରବାରୀ କାନାଡା ମୋର ବ୍ୟକ୍ତିଗତ ଅଭିଜ୍ଞତା । କେଉଁଠି ଚରିତ୍ରଟି ଜୀବନରେ ପାଇଥିବା ତିନି ଚାରିଜଣ ବ୍ୟକ୍ତିଙ୍କର ସମଷ୍ଟି । ଏକ ଦିଗରୁ ହୁଏତ ତାହାକୁ କାଳ୍ପନିକ କୁହାଯାଇ ପାରେ ।

ତେବେ ଗାଳ୍ପିକର ପ୍ରଥମ ଉଦ୍ଦେଶ୍ୟ ହେଲା ଶ୍ରୋତା ବା ପାଠକର ମନୋରଂଜନ । ପାଠକ ଗଳ୍ପକୁ ଓ ଗଳ୍ପର ଚରିତ୍ରମାନଙ୍କୁ ନିଜର ଲୋକ ଭାବିବ ଏବଂ ସେମାନଙ୍କ ସୁଖଦୁଃଖ ବାଣ୍ଟିନେବ । ସରସ୍ୱତୀଙ୍କର ଏହି ହୁକୁମ ତାମିଲ କରିବା ବଡ କଠିନ । ବହୁତ ଦିଗ୍‌ଗଜମାନେ ଏଥିରେ ଚିତ୍‌ପଟାଙ୍ଗ ହୋଇ ଯାଇଛନ୍ତି । ଉଦାହରଣ ସ୍ୱରୂପ ଆମ ସ୍କୁଲ ପାଠରେ ରବୀନ୍ଦ୍ରନାଥଙ୍କର ଏକ ଗଳ୍ପର ଇଂରାଜୀ ଅନୁବାଦ ଥିଲା । ସେଥିରେ ପ୍ରଧାନ

ଚରିତ୍ର ଜଗନ୍ନାଥ କୁଣ୍ଟୁ ନାମକ କୃପଣ । ଫଳତଃ ଯେ ବା କିଞ୍ଚିତ୍ କୃପଣତା ଦେଖାଉଥିଲା, ଯେପରି ପାଖରେ ଥିବା ଟଫିରୁ ଭାଗ ନ ଦେବା, ସେ ତତ୍କ୍ଷଣାତ୍ ଜଗନ୍ନାଥ କୁଣ୍ଟୁ ଉପା‹ ( ପାଇ ଯାଉଥିଲା । ଏହା ହେଲା ସଫଳ ଗଳ୍ପ । ମୁଁ କଣ ରବୀନ୍ଦ୍ରନାଥ ନା ମପାସାଁ ଯେ ସେ ସବୁ ଉଦ୍‌ଭଟ୍ଟ ଆଶା କରିବି ? ମୋର ଲକ୍ଷ୍ୟ ଅତି ସୀମିତ । ସହୃଦୟ ପାଠକ ପାଠିକାଗଣ, ଆପଣ ଏହି ଗଳ୍ପଗୁଡ଼ିକ ପଢ଼ିଲେ ସେଥିଲାଗି ଧନ୍ୟବାଦ । ମୋର ଲକ୍ଷ୍ୟ, ଆପଣ ଯେପରି ଗଳ୍ପ ପଢ଼ିସାରି ନ କହନ୍ତୁ 'ଧେତ୍, ବୋର୍ କଲା ।'

ଜୀବନ ବହୁରୂପୀ, ବହୁରଙ୍ଗୀ, କଳା ଅଛି, ଧଳା ଅଛି, କିନ୍ତୁ ବେଶି ଧୂସର । ଏଣୁ ଧୂସରକୁ ବାଦ ଦେଇ ଜୀବନର ଚିତ୍ର ହୁଏ ନାହିଁ ।

ଏଣୁ ମୁଁ ସାଧ୍ୟମତେ ସବୁ ରଙ୍ଗ ବୋଳିବାର ଚେଷ୍ଟା କରିଛି । ବିଚାର ଆପଣଙ୍କ ହାତରେ । କେବଳ କାଳିନ୍ଦୀ ପାଣିଗ୍ରାହୀଙ୍କ ଭାଷାରେ ନିବେଦନ,

ଦୁନିଆର ହାଟେ କୋଟି ହିରାନୀଳା
ମଣି ମାଣିକର ତୁଲ
ମାଟିର ପିତୁଳା ଗଢ଼ି ରଖିଦେଲି,
କିଏ ପଚାରିବ ମୂଲ ।

ତେବେ ଏହି ଦୁରାଶା ଅଛି ଯେ ଆପଣ ମୂଲ ପଚାରିପାରନ୍ତି ।

ନିବେଦନ ମିଦଂ ଇତି ।

ଉମାକାନ୍ତ ମହାପାତ୍ର

# ସୂଚୀପତ୍ର

ଲେଖକଙ୍କର ଅନ୍ୟାନ୍ୟ କୃତି

ଇନ୍ଦ୍ରାଣୀ ନଗରୀ
ଗାଲିବ୍
ଯାଯାବରର ଜବାନବନ୍ଦି

ପ୍ରକାଶୋନ୍ମୁଖୀ
ଇତିହାସର ଆରରୁ

# ରନ୍ ଅପା

ଜୀବନରେ କେତେ ଲୋକଙ୍କ ସାଥିରେ ଦେଖା ନହୁଏ । ସେମାନଙ୍କ ମଧ୍ୟରୁ ତ ଅଧିକାଂଶ ବିସ୍ମୃତିର ଗୌହରକୁ ଗଳି ଯାଆନ୍ତି । କିନ୍ତୁ କାଳେ ଭଦ୍ରେ ଏପରି ଜଣ ଜଣଙ୍କ ସାଥିରେ ଦେଖା ହୁଏ, ଯାହାଙ୍କୁ ଭୁଲିବା ଅସମ୍ଭବ । ସେମାନେ ପରିସ୍ଥିତିର ଦାସ ନୁହନ୍ତି । ସେମାନେ ପରିସ୍ଥିତିର ନିୟନ୍ତ୍ରଣକାରୀ । ଏହିପରି ଜଣେ ହେଲେ ରନ୍ ଅପା ।

ରନ୍ ଅପାଙ୍କ ସାଥିରେ ମୋର ପରିଚୟ ପିଲାଦିନୁ । ସେ ଗୋଟିଏ ଛୋଟ ସବଡିଭିଜନ ସହରର କଥା । ସରକାରୀ ଚାକିରିଆମାନଙ୍କ କ୍ୱାର୍ଟର ପାଖାପାଖି ହୋଇଥିବାରୁ ତାହା ଏକ ଅଫିସର ପଡ଼ାରେ ପରିଣତ ହୋଇଥିଲା । ମୋ ବାପା ଥିଲେ ଡ଼ାକ୍ତର ଓ ରନ୍ ଅପାଙ୍କ ବାପା ପୋଲିସ ଇନ୍‌ସ୍‌ପେକ୍ଟର । ରନ୍‌ଅପା ଆମ ଭିତରେ ବୟସରେ ବଡ଼ ଓ ଏକ ପ୍ରକାର ଏହି ପିଲା ସମାଜର ନେତ୍ରୀ । ତାଙ୍କୁ ଆମେ କିଂଚିତ୍ ଡ଼ରୁଥିଲୁ କାରଣ ସମୟ ଉପଯୋଗୀ ଏକ ଚଟକଣା ବସାଇ ଦେବାକୁ ଅପା ମୋଟେ କୁଣ୍ଠିତା ନଥିଲେ । ତଥାପି ସେ ଯାହା କଲେ ମଧ, ଆମର କୌଣସି କଥା ବାପାମାଙ୍କ ପାଖେ ପ୍ରକାଶ କରୁନଥିଲେ । ଅତଏବ ନିରାପଦ । ଏଣୁ ଆମେ ତାଙ୍କର ଶାସନ ସ୍ୱୀକାର କରି ନେଇଥିଲୁ । ଅପା ସେତେବେଳର ଝିଅଙ୍କ ପଢାପଢିର ଶିଖରକୁ ଆସି ଯାଇଥିଲେ । ଅର୍ଥାତ୍ ମ୍ୟାଟ୍ରିକ ପରୀକ୍ଷା ଦେଇ ସାରିଥିଲେ । ଶୁଣୁଥିଲୁ ଯେ ଅପାଙ୍କର ବାହାଘର ଠିକ୍ ହୋଇଗଲାଣି ଓ ତାଙ୍କ ସ୍ୱାମୀ ଜଣେ ଓକିଲ । ଅପା କିପରି ମନମରା ଦିଶୁଥିଲେ । କିନ୍ତୁ ବାହା ହେବା ଝିଅ ସେପରି ଦିଶିବା ସ୍ୱାଭାବିକ ବୋଲି ଆମେ ଭାବୁଥିବାରୁ ତାହା ଉପରେ କୌଣସି ଗୁରୁତ୍ୱ ଦେଇ ନଥିଲୁ ।

ଏପ୍ରିଲ ମାସର ଶେଷ । ଅପାଙ୍କ ବାହାଘରର ବନ୍ଦୋବସ୍ତର ଧୂମ ଧାମ ଲାଗି ଗଲାଣି । ସେଦିନ ରାତି ଗୋଟାଏ, ମୁଁ ଘରେ ଏକା । ମା ଅପାଙ୍କ ଘରେ କିଛି ଦିନ ହେଲା କ୍ୟାମ୍ପ ପକାଇଛନ୍ତି । ପରୀକ୍ଷା ମୁଣ୍ଡ ଉପରେ ଥିବାରୁ ମୁଁ ଅଙ୍କ ସହିତ ଏକ ଅସଫଳ ସଂଗ୍ରାମ ଚଲାଇଛି । ହଠାତ୍ ଅପା ଆସି ହାଜର । ମୋତେ କହିଲେ, ''ପାଟି କରନା, ଯା ଚୁପଚାପ ଜୟନ୍ତ ବାବୁଙ୍କୁ ଡ଼ାକି ଆଣ ।'' ଜୟନ୍ତବାବୁ ଗୋଟା ସବ୍‌ଇନିସ୍‌ପେକ୍ଟର । ଆମମାନଙ୍କ ସାଥିରେ ଫୁଟ୍‌ବଲ ଖେଳନ୍ତି । କିନ୍ତୁ ମୋ ପରି ବୋକା ପକ୍ଷରେ ମଧ ସ୍ପଷ୍ଟ ଥିଲା ଯେ ଏହା

ଏକ ପ୍ରେମ ଘଟିତ ବ୍ୟାପାର ଏବଂ ମୋତେ ଯାହା କରିବାକୁ କୁହାଯାଉଛି ତାହା ଅତ୍ୟନ୍ତ ଗର୍ହିତ । ତଥାପି ଅପାଙ୍କ ଆଦେଶ ଅମାନ୍ୟ କରିବାର କଳ୍ପନା ମଧ ମନକୁ ଆସିନଥିଲା । ମୁଁ ତାଙ୍କ ଆଦେଶ ପାଳନ କର୍ଲି ଓ ଜୟନ୍ତବାବୁ ଆସିଲେ । ନିଜର ପ୍ରଣୟୀଙ୍କୁ ଦେଖି ଅପାଙ୍କର ପୁଲକ, ରୋମାଞ୍ଚ, ବେପଥୁ ଇତ୍ୟାଦି କୌଣସି ସାତ୍ତ୍ୱିକ ବିକାର ଦେଖାଗଲା ନାହିଁ । ସେ କେବଳ ଶାନ୍ତ ସ୍ୱରରେ କହିଲେ, ''ମୋ ଚିଠି ତକ ନେଇଆସ, ତମ ଚିଠି ସବୁ ଆଣିଛି । ଏକାଠି ପୋଡ଼ିଦେବା ।'' ଜୟନ୍ତବାବୁ ଚିଠି ସବୁ ନେଇ ଆସିଲେ । ଅପା ଥରେ ଆଖି ବୁଲେଇ ଗଲେ, ସବୁ ଅଛି କି ନାହିଁ । ତାହା ପରେ ବ୍ଲାଉଜ ଭିତରୁ ବିଡ୍ଡାଟିଏ ଚିଠି କାଢିଲେ । ଅଗଣାରେ କିରାସିନି ପକାଇ ସବୁ ନିଜେ ନିଆଁ ଲଗାଇ ଦେଲେ । ଜୟନ୍ତବାବୁ କାନ୍ଦ କାନ୍ଦ ହୋଇ କହିଲେ, ''ସ୍ମୃତି ଟିକିଏ ମଧ ରଖିଲ ନାହିଁ ?'' ଅପା କହିଲେ, ''ସ୍ମୃତି ତ ମନରେ, ଏଗୁଡାକ କେବଳ ବିପଦ ।'' ଜୟନ୍ତବାବୁ ଚାଲିଗଲେ । ଅପା ଯିବା ଆଗରୁ ମୋତେ ସାବଧାନ କରିଗଲେ, ''ଦେଖ, କାହା ଆଗରେ କିଛି ପାଟି ଫିଟାଇବୁ ନାହିଁ, କାରଣ ଜୟନ୍ତବାବୁଙ୍କୁ ଡ଼ାକିଆଣି ତୁ ମଧ ଆମ ପାପରେ ସାମିଲ ହୋଇଛୁ ।''

ଏହା ଭିତରେ ଆମେ କିଶୋରରୁ ଯୁବକ ଏବଂ ଯୁବକରୁ ପ୍ରୌଢ଼ ହେବାକୁ ବସିଲୁଣି । ମୁଁ ସେତେବେଳେ ଦିଲ୍ଲୀରେ । ଓଡ଼ିଆ ସମାଜର କେନ୍ଦ୍ରବିନ୍ଦୁ ହେଲା ହଉଜ୍‌ଖାସର ଜଗନ୍ନାଥ ମନ୍ଦିର । ପ୍ରାୟ ପୂଜା ପାର୍ବଣରେ ସବୁ ଓଡ଼ିଆ ଏକାଠି ହୁଅନ୍ତି । ଯେପରି ରଥଯାତ୍ରା ବା ସରସ୍ୱତୀ ପୂଜା । ଏହି ସୂତ୍ରରେ ଏକ ଓଡ଼ିଆ ଦମ୍ପତିଙ୍କ ସାଥିରେ ପରିଚୟ । ଭଦ୍ରଲୋକଙ୍କ ବୟସ ଷାଠିଏ ଉପରେ । ସୁପ୍ରୀମ କୋର୍ଟରେ ଭଲ ପ୍ରାକ୍ଟିସ କରନ୍ତି । ବେଶ ମଜଲିସି ସ୍ୱଭାବର ଲୋକ । କିନ୍ତୁ ତାଙ୍କ ସ୍ତ୍ରୀ ବଡ଼ ଗମ୍ଭୀର ପ୍ରକୃତିର ଜଣା ପଡୁଥିଲେ । ଆମେ ଯେଉଁଠି ପିଲାଦିନେ ଥିଲୁ, ସେତେବେଳେ ସେଠାର ଏସ୍.ଡ଼ି.ଓ ଙ୍କ ପୁଅ ଜଣେ ପ୍ରସିଦ୍ଧ ବୈଜ୍ଞାନିକ । ତାଙ୍କ କଥା ଦିନେ ପଡ଼ିଲାରୁ ଭଦ୍ରଲୋକଙ୍କ ସ୍ତ୍ରୀ ଅନେକ ଖୋଳି ତାଡ଼ି ପ୍ରଶ୍ନ ପଚାରିଲେ । ଶେଷରେ କହିଲେ, ''ମୋତେ ଚିହ୍ନିଛୁ ? ମୁଁ ତୋର ସେହି ପିଲାଦିନର ରନ୍ ଅପା'' ।

ଏହା ପରେ ଆମର ଘନିଷ୍ଠତା ଓ ଯିବା ଆସିବା ବଢ଼ିଲା । ଭଦ୍ରଲୋକ ଖୁବ୍ ଦିଲ୍‌ଦାରିଆ ଓ ଆସର ଜମାଇ ପାରନ୍ତି । କିନ୍ତୁ ମନେହେଲା ଯେପରି ଅପା ଆହୁରି ଗମ୍ଭୀର ଓ ମନୁଆ ହୋଇଯାଇଛନ୍ତି । ତାଙ୍କ ସାମ୍ରାଜ୍ୟରେ ତାଙ୍କ ପ୍ରତାପ ଅପ୍ରତିହିତ । ସବୁ ତାଙ୍କ ଆଙ୍ଗୁଠିର ଇଶାରାରେ ନାଚୁଛି । ବର୍ତ୍ତମାନ ଅପାଙ୍କର ଆମ ଭଲମନ୍ଦ ଉପରେ ମଧ ସେହି କଡ଼ା ନଜର । ଥରେ ଏକାଠି ମୁଁ ଓ ମୋ ସ୍ତ୍ରୀ ଭାଇରାଲ ଜ୍ୱରରେ ପଡ଼ିଗଲୁ । ଅପା ଆସି ଆମ ସଂସାରର ଦାୟୀତ୍ୱ ନେଇ ଆମର ସେବା ଶୁଶ୍ରୁଷା କରି ଆମକୁ ଏକ ପ୍ରକାର ଭଲ କରିଦେଲେ । କିନ୍ତୁ ସବୁ କାମ ଦାୟୀତ୍ୱସମ୍ପନ୍ନ କର୍ତ୍ତ୍ରୀଙ୍କର । ମୋର ସ୍ତ୍ରୀ ଅପାଙ୍କ ଏକାନ୍ତ ଭକ୍ତ ହେବା ସତ୍ତ୍ୱେ ଥରେ କହିଥିଲେ ଅପା ହେଲେ ଶାଶୁତ୍ୱର ନିର୍ଯ୍ୟାସ ।''

ଅପାଙ୍କର ଗୋଟିଏ ପୁଅ ଓ ଗୋଟିଏ ଝିଅ । ଝିଅର ବାହାଘର ହେଲା । ଉପଯୁକ୍ତ ବର ଓ ଘର । ସବୁ କାମ ଅପାଙ୍କ ନିର୍ଦ୍ଦେଶମତେ ଏକଦମ ସୁରୁଖୁରୁରେ ଚାଲିଛି । ପାଟି ନାହି, ତୁଣ୍ଡ ନାହିଁ । ଯେପରି ଭଲ ତେଲ ଦିଆ ହୋଇଥିବା ଏକ ଉତ୍କୃଷ୍ଟ ମେଶିନ୍ । ମୁଁ ଓ ମୋ ସ୍ତ୍ରୀ ଲକ୍ଷ୍ୟ ରଖିଥାଉ ଅପା କେତେବେଳେ କାନ୍ଦିବେ । କିନ୍ତୁ ନାହିଁ । କେବଳ ଝିଅ ବିଦା ବେଳକୁ ଖରାରେ ମେଘର ଛାଇ ପଡ଼ିଲା ପରି ମୁହଁଟା ଟିକିଏ ବିବର୍ଣ୍ଣ ଦେଖାଗଲା । କିନ୍ତୁ ତାହା କେବଳ ମୁହୂର୍ତ୍ତକ ପାଇଁ, ପୁଣି ଥରେ ସେହି ଦାୟୀତ୍ୱଶୀଳ କର୍ତ୍ତ୍ରୀର ମୁଖ ।

ଏହି ସୁଖର ସଂସାର ଉପରେ ବଜ୍ରପାତ ହେଲା । ଅପାଙ୍କ ସ୍ୱାମୀ ହଠାତ୍ ହାର୍ଟ ଆଟାକ୍‌ରେ ଚାଲିଗଲେ । ଆମେ ସବୁ ଯାହା ସାହାଯ୍ୟ କରିବାର କଲୁ । କିନ୍ତୁ ଅପା ଅବିଚଳିତ, ଯେପରି ଏପରି ଘଟଣା ପାଇଁ ସେ କେବଳ ପ୍ରସ୍ତୁତ ନଥିଲେ । ପରିସ୍ଥିତି ସମ୍ଭାଳିବାର ଏକ ଯୋଜନା ମଧ ତାଙ୍କ ପାଖରେ ଥିଲା । ଆମେ ସହାନୁଭୂତି ସାନ୍ତ୍ୱନା ଇତ୍ୟାଦି ଦେଲେ ସେ କହନ୍ତି, "ଯାହା ହେଲା ତାହା ତ ଆଉ ବଦଳି ଯିବନାହିଁ, ଭବିଷ୍ୟତ ଲାଗି ପ୍ରସ୍ତୁତ ହେବାକୁ ପଡ଼ିବ ।" ଅପା ଖୁବ୍ ଶୀଘ୍ର ଅବସ୍ଥା ସମ୍ଭାଳି ନେଲେ । ନୂତନ ପରିସ୍ଥିତିକୁ ଚାହିଁ ଯେଉଁ ପରିବର୍ତ୍ତନ ଦରକାର ତାହା ସବୁ ସୁରୁଖୁରୁରେ ହୋଇଗଲା ।

ଅପାଙ୍କ ପୁଅ କମ୍ପ୍ୟୁଟର ଇଂଜିନିୟର । ସେ ଆମେରିକାର ଏକ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟରେ ଗବେଷଣା କରିବାକୁ ଏକ ଫେଲୋଶିପ୍ ପାଇଲା । ମୁଁ କିନ୍ତୁ ଅପାଙ୍କୁ କହିଲି ଯେ ଭାରତୀୟ କମ୍ପ୍ୟୁଟର ବିଶେଷଜ୍ଞମାନେ ଥରେ ଆମେରିକା ଗଲେ ଆଉ ଫେରନ୍ତି ନାହିଁ । ଏବେ ମଧ ସେ ଏକ ଅତି ଭଲ ସଂସ୍ଥାରେ ଚାକିରୀ କରିଛି ଏବଂ ଏଠି ମଧ କଣ ରିସର୍ଚ୍ଚ କରି ହେବ ନାହିଁ ? ବିଶେଷ କରି ଇସ୍‌ରୋ ବା ଡିଫେନ୍‌ସ୍ ସାଇନ୍‌ସ୍‌ରେ । କିନ୍ତୁ ଅପା କେବଳ କହିଲେ ବାବୁ (ତାଙ୍କ ପୁଅର ଡାକନାମ ) ବଡ଼ ପିଲା । ତା ଜୀବନ ତାହାର । ସେ ତାହାର ନିଜର ନିର୍ଣ୍ଣୟ କରିବ । ମୁଁ ମୋ ଜୀବନକୁ ଜିଇଁ ପାରି ନାହିଁ । ମୁଁ ବାବୁର ଜୀବନରେ ହସ୍ତକ୍ଷେପ କରିବି ନାହିଁ ।

ଶେଷରେ ବାବୁର ଯିବାର ଉପସ୍ଥିତ ହେଲା । ମୁଁ ତାକୁ ନାନା ଭାବରେ ସାହାଯ୍ୟ କରିଥିଲି । ପାସ୍‌ପୋର୍ଟ ଭିସା ଇତ୍ୟାଦିରେ ତ ନିଶ୍ଚୟ । ଏପରିକି ତାକୁ ଚାକିରୀ ଛାଡ଼ିବାକୁ ପଡ଼ିନଥିଲା । ତାହାର ଷ୍ଟଡ଼ି ଲିଭ ହୋଇଗଲା । ମୋର ଏୟାରପୋର୍ଟରେ ବହୁତ ଜଣାଶୁଣା ଥିବାରୁ ମୁଁ ତାକୁ କଷ୍ଟମ, ଇମିଗ୍ରେସନ ଇତ୍ୟାଦି କରାଇଦେଇ ତାକୁ ଡିପାରଚର ଲାଉଂଜ ଭିତରେ ଛାଡ଼ିଦେଇ ଆସିଲି । ବର୍ତ୍ତମାନ ଅପା ଆଉ ମୁଁ ଏକୁଟିଆ । ମୁଁ ଅପାଙ୍କୁ ଏକୁଟିଆ ଛାଡ଼ିଦେବାର ଚେଷ୍ଟା କଲି ଯେପରି ସେ ତାଙ୍କର ଛାତିରେ ଚାକି ରଖିଥିବା କୋହକୁ ବାହାର କରିଦେଇ ପାରିବେ । କିନ୍ତୁ ଏଣେ ଅପା ମୋତେ ମଧ ଛାଡ଼ୁ ନଥାନ୍ତି । ଏ ଭିତରେ ବାବୁର ବିମାନର ଘୋଷଣା ହେଲା । କିଛି ସମୟପରେ ବାବୁର ପ୍ଲେନ ବଜ୍ରଗର୍ଜନ କରି ଉଡ଼ି

ଚାଲିଗଲା ।

ମୋତେ ଏହା ଭିତରେ ଭୋକ ହେଲାଣି । ତେଣୁ ଅପାଙ୍କୁ ଧରି ରେଷ୍ଟୁରାଁକୁ ଗଲି ଏବଂ ସେଠି କଫି ଓ ସାଣ୍ଡଉଇଚ୍ ମଗାଇଲି । ଖାଉ ଖାଉ କହିଲି ''ବାବୁ ତ ଦୁଇବର୍ଷପରେ ତାର ରିସର୍ଚ୍ଚ ସାରି ଫେରି ଆସିବ । ସେତେବେଳକୁ ଏଠି ତାର ପ୍ରୋମୋଶନ ହେବାର ମଧ ସମୟ ହୋଇଯାଇଥିବ । ତା ଭିତରେ ତୁମେ ଥରେ ଆମେରିକା ମାରିଆସ । ଆରବର୍ଷ ଆଡ଼କୁ ।'' ଅପା ସାଣ୍ଡଉଇଚ ଖାଉ ଖାଉ କହିଲେ, ''ମୁଁ ଠିକ ଜାଣେ ବାବୁ ଫେରିବ ନାହିଁ । ହୁଏତ କେତେବେଳେ ଛୁଟିରେ ବୁଲିବାକୁ ଆସିପାରେ । ହୁଏତ ସେଠି ବାହା ହୋଇଯିବ । କିନ୍ତୁ ସେ ତାର ଜୀବନ । ସେ ତାକୁ ନିଜ ଇଚ୍ଛାରେ ଗଢ଼ିବ । ମୁଁ ମୋର ଜୀବନ ଜିଇଁ ପାରିନାହିଁ । ତୁ ଜାଣୁ, ମୁଁ ଭଲ ପାଉଥିଲି ଜୟନ୍ତକୁ । ଆମେ ପଳେଇବା କଥା ମଧ ଭାବିଥିଲୁ । କିନ୍ତୁ ମୁଁ ନାବାଳିକା । ଏଣୁ ଫଳରେ କେବଳ ଜୟନ୍ତ ଜେଲ ଯାଇଥାଆନ୍ତା । ସେଦିନ ରାତିରେ ତୁ ଦେଖିଲୁ ମୁଁ ମୋର ହୃଦୟଟାକୁ କିପରି ପୋଡ଼ିଦେଲି । ତାହାପରେ ଆଉ ହୃଦୟର କଥା ଉଠି ନାହିଁ । ମୋ ସ୍ୱାମୀଙ୍କର ମୁଁ ଥିଲି ସ୍ତ୍ରୀ, ଗୃହିଣୀ । ପ୍ରେୟସୀ ନୁହେଁ । ମୁଁ କେବଳ କର୍ତ୍ତବ୍ୟ କରିଯାଇଛି । ମୋ ଇଚ୍ଛାରେ ନୁହେଁ । କେବଳ କରିବାକୁ ବାଧ ବୋଲି । କୁନି (ଝିଅ) ର ବାହାଘର ହୋଇଗଲା । ଗୋଟିଏ ବନ୍ଧନ କଟିଗଲା । ଇଏ ଚାଲିଗଲେ । ସବୁଠାରୁ ବଡ଼ ବନ୍ଧନ ଛିଡ଼ିଗଲା । ଆଜି ଶେଷ ବନ୍ଧନଟି କଟିଗଲା । ଆଜି ମୁଁ ମୁକ୍ତ । ମୁଁ ସ୍ୱାଧୀନ ।''

ମୁଁ ଠିକ୍ ବୁଝିପାରୁନଥାଏ । ଅପାଙ୍କୁ ପଚାରିଲି ''ଅପା, ତୁମେ କଣ ଭାବୁଛ ଏହାପରେ ତୁମେ ସୁଖ ପାଇବ ?''

ଅପା ଜୋରରେ ହସିଲେ । କହିଲେ ''ଦୂର୍ ବୋକା, ସୁଖ ମଧ ତ ଗୋଟେ ବନ୍ଧନ । ଯେତେବେଳେ ପର୍ଯ୍ୟନ୍ତ ସୁଖ ଅଛି, ଦୁଃଖ ଭୟରେ ଅସ୍ଥିର । ମୁକ୍ତି ଦୁଃଖରୁ ମୁକ୍ତି, ସୁଖରୁ ମଧ ମୁକ୍ତି ।''

ମୁଁ ଅପାଙ୍କ ମୁହଁକୁ ବୋକାଙ୍କ ପରି ବଲବଲ କରି ଚାହିଁଛି । ଅପା ହସି ଦେଇ କହିଲେ, ''ଚାହିଁଛୁ କଣ, ଚାଲ ଘରକୁ ଯିବା । ଥରେ ତୋତେ ଯାହା ଦେଖିଥିଲୁ ତାହା ଭୁଲିଯିବାକୁ କହିଥିଲି । ଆଜି ତୋତେ ଯାହା ଶୁଣିଲୁ, ତାହା ମଧ ଭୁଲିଯିବାକୁ କହୁଛି ।''

ଯାହା ଦେଖିଥିଲି, ତାହା ତ ଭୁଲିନାହିଁ । ଯାହା ଶୁଣିଛି ତାହା ବା ଭୁଲିବି କିପରି ?



# ସନଦ

ଗତ ଶତାବ୍ଦୀର ଶେଷ ଓ ଏହି ଶତାବ୍ଦୀର ପ୍ରଥମ ଭାଗ ଆମଦେଶରେ ପ୍ରାଚ୍ୟ ବିଦ୍ୟା ଅର୍ଥାତ୍ ସଂସ୍କୃତ ଓ ପାରସୀ ଚର୍ଚ୍ଚାର ଘୋର ଦୁର୍ଦ୍ଦିନ। Demand and Supply ତ ଶିକ୍ଷା କ୍ଷେତ୍ରରେ ମଧ୍ୟ ଖାଟେ। ଇଂରେଜର ଦରକାର ସେ ସମୟରେ କିରାନୀ ଅମଲା ଏବଂ କିଛି Professionals ଯଥା ଓକିଲ, L.M.P. ଡ଼ାକ୍ତର, ଓଭରସିଅର ଇତ୍ୟାଦି। ଏମାନଙ୍କୁ ତିଆରି କରିବା ଲାଗି କିଛି ମାଷ୍ଟର୍। ବ୍ରିଟିଶ ଗର୍ଭନ୍‌ମେଣ୍ଟ ଅତିଶୟ ସଦାଶୟ। ଉଚ୍ଚ ସ୍ଥାନ ଭାରତୀୟଙ୍କ ଲାଗି ଠିକ ବନ୍ଦ ନୁହେଁ। କିନ୍ତୁ ସେଥିଲାଗି ପଢ଼ିବାକୁ ବିଲାତ ଯିବା ଦରକାର। ଏଣୁ ଏଠି କାମଚଳା ଇଂରେଜୀ, ଯାହାକୁ ତାଚ୍ଛଲ୍ୟର ସହିତ ବାବୁ ଇଂଲିଶ୍ କୁହାଯାଉଥିଲା, ତାହାହିଁ ଶିଖାଇବା ପ୍ରଧାନ ଉଦ୍ଦେଶ୍ୟ। ଏଠି ସଂସ୍କୃତ ପାରସୀ ମଲେ କେତେ, ଗଲେ କେତେ। ଏଣୁ ଏ ଅବସ୍ଥାରେ ବହୁ କାବ୍ୟତୀର୍ଥ, ବେଦାନ୍ତ ଚୁଡ଼ାମଣି, ତର୍କବାଗୀ ଓ ଶମସୁଲ ଓଲେମା ନଖାଇ ମରିବାଟା କିଛି ଆଶ୍ଚର୍ଯ୍ୟ ନୁହେଁ। ତେବେ କାର୍ଯ୍ୟତଃ ସମସ୍ତ ସରକାରୀ କାମ ଇଂରାଜୀରେ କରିବା ସମ୍ଭବ ନହୋଇବାରୁ ଓଡ଼ିଆ ବା ଅନ୍ୟ ପ୍ରାଦେଶିକ ଭାଷା, ଯାହାର ନାମ ସେ ସମୟରେ ଭର୍ଣ୍ଣାକୁଲାର, ପଢ଼ାଇବା ପାଇଁ କେତେକ ପଣ୍ଡିତଙ୍କୁ ମଧ୍ୟ ଚାକିରୀ ମିଳିଥିଲା। ସେମାନଙ୍କ ଦୟନୀୟ ଅବସ୍ଥା ବର୍ତ୍ତମାନ ଅବଧାନ କରିବା କଷ୍ଟ। ନିଜ ବିଦ୍ୟାରେ ସେମାନେ ଅନ୍ୟାନ୍ୟ ମାଷ୍ଟର ମାନଙ୍କ ଠାରୁ ବେଶୀ ଜ୍ଞାନୀ ଓ ଉଚ୍ଚ ଉପାଧିଧାରୀ। କିନ୍ତୁ ବେତନ ସବୁଠାରୁ କମ। ତଦନୁଯାୟୀ ସମ୍ମାନ। ପଣ୍ଡିତେ, ଛାତ୍ରମାନଙ୍କ ପାଖରେ ସାଧାରଣତଃ ଅନ୍ୟ ମାଷ୍ଟରଙ୍କ ତୁଳନାରେ ବେତର ବେଶି ବ୍ୟବହାର କରନ୍ତି, ତଥାପି ତାଙ୍କୁ କେହି ଡ଼ରନ୍ତି ନାହିଁ। ତାଙ୍କ କ୍ଲାସରେ ଦୁଷ୍ଟାମି ହେଉଥିଲା ସବୁଠାରୁ ବେଶୀ। ତାହାର କାରଣ ସେ ଇଂରାଜୀ ଜାଣି ନଥିଲେ।

ଆମକୁ ଯେ ପଣ୍ଡିତେ ପଢ଼ାଉଥିଲେ, ତାଙ୍କର ନାମ ନେବାଟା ଅବାନ୍ତର। ପ୍ରକାଣ୍ଡ ପଣ୍ଡିତ। କର୍ମକାଣ୍ଡ ଓ ଧର୍ମଶାସ୍ତ୍ରରେ ଜଣେ ଦିଗ୍‌ଗଜ, Authority ତାଙ୍କର ଏହି ସବୁ ବିଷୟରେ ସ୍ୱରଚିତ ଗ୍ରନ୍ଥ ଅଛି ଯାହାକି କେତେକ ଧର୍ମପ୍ରାଣ ଜମିଦାରଙ୍କ ବଦାନ୍ୟତା ଯୋଗୁଁ ଛାପା ହୋଇ ଯାଇଥିଲା ଏବଂ ପୁରୋହିତ ମହଲରେ ତାହାର ପ୍ରାମାଣିକତା ଲାଗି ଭୂରିଭୂରି

ପ୍ରଶଂସା ଓ ପ୍ରତିଷ୍ଠା ଲାଭ କରିଥିଲା । କିନ୍ତୁ ତାହା ଅବାନ୍ତର । ଇଂରାଜୀ ତ ଜାଣନ୍ତି ନାହିଁ । ଏଣୁ ତାଙ୍କ ସ୍ଥାନ ଥାର୍ଡ଼ ମାଷ୍ଟର ଓ ଚପରାସି ମଝିରେ । ପଣ୍ଡିତଙ୍କ ଦିନଚର୍ଯ୍ୟା ହିଁ ତାଙ୍କ ପକ୍ଷରେ ମହା ସମସ୍ୟା । ତାଙ୍କର ପୂଜା ଆହ୍ନିକ, ହୋମ ଇତ୍ୟାଦି ସାରି ଆସୁ ଆସୁ ପ୍ରାୟ ସାଢ଼େ ଏଗାର । କିନ୍ତୁ ସ୍କୁଲ ଦଶଟା ବେଳେ । ତେବେ ହେଡ଼ମାଷ୍ଟର ନିଜେ ପଣ୍ଡିତଙ୍କୁ ବିଶେଷ ସମ୍ମାନ କରୁଥିବାରୁ ପଣ୍ଡିତେ ଆପାତତଃ କୌଣସି ବିପଦର ସମ୍ମୁଖୀନ ହୋଇ ନଥିଲେ ।

ପଣ୍ଡିତଙ୍କ ଚେହେରାଟି ଦେଖିବା ଭଳି । କ୍ଷୀଣ ଓ ରୁକ୍ଷ ଦେହ । ଉଚ୍ଚତା ପ୍ରାୟ ଛ ଫୁଟ । ଦେହ ଯଷ୍ଟି କଥାଟିର ଏକ ଜୀବନ୍ତ ଉଦାହରଣ । ମୁଣ୍ଡିତ ମସ୍ତକ ଏବଂ ତାହା ଉପରେ ପ୍ରକାଣ୍ଡ ଶିଖା । ପରିଧାନ ଧୋତି ଓ ଚାଦର । କପାଳରେ ଭସ୍ମଲେପନର ତ୍ରିପୁଣ୍ଡକ । ଦେଖିଲେ ଭକ୍ତି ହେବା କଥା । କିଏ ଜାଣେ ରାଗିଗଲେ ଭସ୍ମ କରିଦେବେ । ଯୋତା ପିନ୍ଧିବାର ପ୍ରଶ୍ନ ଉଠେ ନାହିଁ । ପଣ୍ଡିତେ ବଡ଼ ସହଜରେ ରାଗନ୍ତି । କିନ୍ତୁ ସେ ବିଷୟରେ କାହାର ସେପରି ବ୍ୟସ୍ତତା ନଥାଏ । ପଣ୍ଡିତଙ୍କର ଆମକୁ ରଚନା ଲେଖାଇବାର ବାଇ ଥିଲା । ତାହାର କାରଣ ଏହା ଦ୍ୱାରା କ୍ଲାସର ବାନରଗଣଙ୍କୁ କିଛି ସମୟ ଚୁପ ରଖା ଯାଇ ପାରୁଥିଲା ଏବଂ ତାହା ପରେ ବର୍ଣ୍ଣଶୁଦ୍ଧି, ବ୍ୟାକରଣ ଭୁଲ ଇତ୍ୟାଦି ଅଜୁହାତ ନେଇ ପ୍ରଚୁର ମାଡ଼ ଦେବାର ଅବସର ମିଳି ଯାଉଥିଲା । ପଣ୍ଡିତେ ରଚନା ଲେଖା ଲାଗି ଏକ ବିଶିଷ୍ଟ ଶୈଳୀ ଓ ପଦ୍ଧତି ସ୍ଥିର କରି ଦେଇଥିଲେ । ତାହା ହେଲା (୧) ଉପକ୍ରମଣିକା (୨) ବର୍ଣ୍ଣନା (୩) ଉପକାରିତା (୪) ଅପକାରିତା (୫) ଉପସଂହାର । ଉପକ୍ରମଣିକା ଲାଗି ଏକ ବିଶେଷ ଭାଷା ନିର୍ଦ୍ଦିଷ୍ଟ ଥିଲା । ଧରନ୍ତୁ ବାଉଁଶ ଗଛ ଉପରେ ରଚନା ଲେଖାହେବ । ତାହାର ଉପକ୍ରମଣିକା ଏହିପରି — 'ମହାମହିମ ପରମେଶ୍ୱରଙ୍କ ସୃଷ୍ଟିର ନାନା ବୈଚିତ୍ର୍ୟ ମଧ୍ୟରେ ତାଙ୍କର ଅପାର କରୁଣାର ନିଦର୍ଶନ ସ୍ୱରୂପ ଯେଉଁ ସବୁ ଉଦ୍ଭିଦ ପୃଥିବୀରେ ଜନ୍ମଲାଭ କରି ଅଛନ୍ତି, ତନ୍ମଧ୍ୟରେ ବାଉଁଶ ଗଛ ଅନ୍ୟତମ ।' ସେତେବେଳେ ଅବଶ୍ୟ ଏହି ଭାଷା ଉପହାସ ବସ୍ତୁ ବୋଲି ଆମେ ମନେ କରୁଥିଲୁ । ଯେମିତି ପଣ୍ଡିତେ, ସେମିତି ତାଙ୍କ ଭାଷା । ତଥାପି ମୁଁ ଏକଥା ବର୍ତ୍ତମାନ ସ୍ୱୀକାର କରିବାକୁ ବାଧ ଯେ ଏହା ଭାଷାରେ ଏକ ଅନୁଶାସନ ଆଣି ଦେଇଥିଲା ଏବଂ ଏହା ଯଦି ଆଜି ପ୍ରଚଳିତ ଥାଆନ୍ତା, ତାହାହେଲେ ହୁଏତ ଆମେ ବହୁ ଅବୋଧ୍ୟ ଓ ଅବାନ୍ତର ଦରଖାସ୍ତ ଏବଂ ଫାଇଲ ନୋଟିଂରୁ ତ୍ରାହି ପାଇ ଥାଆନ୍ତୁ ।

ପଣ୍ଡିତଙ୍କର କର୍ମକାଣ୍ଡରେ ଅଗାଧ ବିଶ୍ୱାସ । ଏଣେ ଇଂରେଜଙ୍କ ପ୍ରତି ଅତ୍ୟନ୍ତ ଭକ୍ତି । ବିଶେଷ କରି ଯଦି ରଚନା ଲେଖାରେ କୌଣସି ଇଂରେଜଙ୍କର ଲେଖାର ଉଦ୍ଧୃତି ଦିଆଗଲା । ତାହାହେଲେ ସେ ପିଲାର କଟେ ପୁଅ ବାର । ଥରେ ଏକ ଧୀମାନ ବାଳକ, ଯେକି ସଦ୍ୟ ବୀଜଗଣିତରେ କମ୍ପୋନେଣ୍ଟୋ ଡିଭିଡେଣ୍ଡୋ ଶିଖିଥିଲା ତାହାର ଓଡ଼ିଆ ରଚନାରେ ଲେଖିଲା 'କମ୍ପୋନେଣ୍ଟୋ ସାହେବ କହିଅଛନ୍ତି ଯେ ସମୟର ମୂଲ୍ୟ ଅକଳନୀୟ' । ସେତିକିରେ ଢିଲା

ଫଟେ । ଦଶରୁ ଆଠ ନମ୍ବର ।

ଏହି ଘଟଣାର ସମୟ ବିଂଶ ଶତାବ୍ଦୀର ତୃତୀୟ ଦଶକର ଶେଷଭାଗ ଏବଂ ସ୍ଥାନ ଓଡ଼ିଶାର ଏକ ଗଡ଼ଜାତ । ସେ ସମୟର ଶାସନତନ୍ତ୍ର ବିଷୟରେ ଏବେ କାହାର ଧାରଣା ନଥିବ । ଗଡ଼ଜାତମାନେ ବ୍ରିଟିଶ ସରକାର ସହିତ ଏକ ବିଚିତ୍ର ସମ୍ପର୍କରେ ଆବଦ୍ଧ ଥିଲେ । ଆଇନଗତ ଭାବରେ ଏହି ରାଜାମାନଙ୍କର ସମ୍ପର୍କ ସିଧା ବ୍ରିଟିଶ ରାଜ୍ୟ ସିଂହାସନ ଅର୍ଥାତ୍ କ୍ରାଉନ୍ ସହିତ । ବ୍ରିଟିଶ ସମ୍ରାଟଙ୍କର ଭାରତରେ ପ୍ରତିନିଧି ହେଲେ ଭାଇସରାୟ ଯାହାର ଅର୍ଥ ଉପସମ୍ରାଟ୍ । କିନ୍ତୁ ତାହା ସହିତ ସେ ଖାସ ବ୍ରିଟିଶ ଶାସିତ ପ୍ରଦେଶ ଲାଗି ଥିବା ସବୁ ଗଭର୍ଣ୍ଣରଙ୍କ ଉପରେ ଗଭର୍ଣ୍ଣର ଜେନେରାଲ । ରାଜାମାନେ ଭାଇସରାୟଙ୍କ ସହିତ ସମ୍ପୃକ୍ତ କାରଣ ସେ CROWN REPRESENTATIVE । ଭାଇସରାୟମାନଙ୍କ ସାଥିରେ ସମ୍ପର୍କ ରଖିବା ଏବଂ ରାଜାମାନଙ୍କୁ ଯଥାଯୁକ୍ତ ଭାବେ ନଚେଇବା ଲାଗି ଏକ ପଲିଟିକାଲ ସର୍ଭିସ ଥିଲା । ଏହା ଏକ ପ୍ରକାର I.C.Sର ବାବା । ଏଥିରେ ସେନା ଏବଂ ଆଇ.ସି. ଏସ୍‌ରୁ ବଛା ବଛା ଅଫିସର ମାନେ ରହୁଥିଲେ । ବଡ଼ ବଡ ଷ୍ଟେଟ ଯଥା ହାଇଦ୍ରାବାଦ ବା ବରୋଦାରେ ଜଣେ ରେସିଡ଼େଣ୍ଟ ରହୁଥିଲେ । ସତେ ଯେପରି ଏକ ସ୍ୱାଧୀନ ରାଜ୍ୟରେ ଏହା ବ୍ରିଟିଶ ଦୂତାବାସ । କିନ୍ତୁ ରେସିଡ଼େଣ୍ଟଙ୍କ ଭ୍ରୁକୁଟିରେ ରାଜାଙ୍କର ମୂର୍ଚ୍ଛା ଓ ପତନ ହେଉଥିଲା । ଓଡ଼ିଶା ଏବଂ ମଧ୍ୟ ପ୍ରଦେଶରେ ଛତିଶଗଡ଼ରେ ବହୁ ଛୋଟ ଛୋଟ ରାଜ୍ୟ । ଏଣୁ ଏଥିଲାଗି ଜଣେ ରେସିଡ଼େଣ୍ଟ କଲିକତାରେ ରହୁଥିଲେ । ତାଙ୍କ ତଳେ ଦୁଇଜଣ ପୋଲିଟିକାଲ ଏଜେଣ୍ଟ ଥିଲେ, ଯେଉଁମାନଙ୍କ ନାମ ଲୋକମୁଖରେ ହୋଇଗଲା ପୁଲଟିଗେନ୍ ସାହେବ । ଜଣେ ଓଡ଼ିଶା ଗଡ଼ଜାତ ଲାଗି ସମ୍ବଲପୁରରେ ଏବଂ ଆଉଜଣେ ଛତିଶଗଡ଼ ଲାଗି ରାୟପୁରରେ । ବ୍ରିଟିଶ ପ୍ରଦେଶ ଯଥା ଓଡ଼ିଶା ବା ସି.ପି. (Central Province) ସରକାରର ଏଠି କୌଣସି କର୍ତ୍ତୃତ୍ୱ ନଥିଲା ।

ସେହି ରେସିଡ଼େଣ୍ଟ ସାହେବ ଥରେ ଗସ୍ତକୁ ଆସିଥିଲେ । ତାଙ୍କର ନାନାବିଧ ପ୍ରୋଗ୍ରାମ ଯଥା ଶିକାର, ଟେନିସ ଇତ୍ୟାଦି ସହ ଲୋକହିତକର ଅନୁଷ୍ଠାନ ଯଥା ସ୍କୁଲ ଡାକ୍ତରଖାନା ଇତ୍ୟାଦିର ପରିଦର୍ଶନ ମଧ୍ୟ ଥିଲା । ଏପରି ପରିଦର୍ଶନ ବା ଭିଜିଟ୍ ଏକା ସାଥିରେ ବଡ଼ ସୁଖର ଓ ବଡ଼ ଦୁଃଖର । ସୁଖର କାରଣ ଭିଜିଟ୍ । ପରେ ତିନି ଦିନ ଛୁଟି । ଦୁଃଖର କାରଣ ଅତ୍ୟଧିକ ମାନସିକ ଚାପ ଓ ବ୍ୟସ୍ତତା ଯୋଗୁଁ ମାଷ୍ଟରମାନେ ଟିକିଏ କଥାରେ ରାଗି ଯାଆନ୍ତି ଓ ନିସ୍ତୁକ ବାଡ଼ାନ୍ତି । ଏହି ରେସିଡ଼େଣ୍ଟ ଟିକିଏ ଆଡ଼ପାଗଲା ଥିଲେ । ଅନ୍ୟ ସୁସ୍ଥ ମସ୍ତିଷ୍କ ଇଂରେଜ୍‌ମାନଙ୍କ ପରି ସେ ଭାରତୀୟ ସଭ୍ୟତାକୁ ଘୃଣା କରୁ ନଥିଲେ । ଏହା ଆଗରୁ ସେ ରାମପୁର ଓ ହାଇଦ୍ରାବାଦରେ ରେସିଡ଼େଣ୍ଟଙ୍କ ସେକ୍ରେଟାରୀ ରହି କିଛି ଉର୍ଦ୍ଦୁ ଓ ଫାରସୀ ଶିଖିଥିଲେ । ତେଣୁ ରେସିଡ଼େଣ୍ଟଙ୍କ ଅଫିସରୁ ଚିଠି ଆସିଗଲା ଯେ ସାହେବ ଓରିଏଣ୍ଟାଲ

ଲର୍ନିଂ (Oriental Learning) ରେ କେତେକଙ୍କୁ ରିକଗ୍ନିଶନ (Recognition) ଦେବାକୁ ଚାହାନ୍ତି । ଏହା ପରଓ୍ୱାନ ନୁହେଁ ତ ଓ୍ୱାରେଣ୍ଟ ଅଟେ । ଏଠି ତ ଆଉ ଯେପରି କେହି ବିଦ୍ୱାନ ନାହାନ୍ତି । ଏଣୁ ସ୍ଥିର ହେଲା ଯେ, ପଣ୍ଡିତଙ୍କୁ ଏଥିଲାଗି ଦରବାରରେ ସମ୍ମାନିତ କରାଯିବ । ଏଥିରେ ଏକ ସନନ୍ଦ ଏବଂ ଶାଲ ମିଳିବା କଥା ।

ଦରବାର ନାମକ ପ୍ରତିଷ୍ଠାନ ବିଷୟରେ ଜାଣିଥିବା ଲୋକ ବର୍ତ୍ତମାନ ହୁଏତ ନାହାନ୍ତି । ଆପଣଙ୍କର ବଶମ୍ୱଦ ମଧ୍ୟ ଦରବାର ଚର୍ମଚକ୍ଷୁରେ ଦେଖିନାହିଁ କାରଣ ସେ ସମୟରେ ସେ ଅତି ପିଲା । ତେବେ ପ୍ରତ୍ୟକ୍ଷଦର୍ଶୀମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ଥିବାରୁ ମୋଟାମୋଟି ଓ୍ୱାକିଫ୍‌ହାଲ୍ । ସେଠାର ଆଇନ କାନୁନ ଅତ୍ୟନ୍ତ କଠୋର । କିଛି ନହେଲେ କବିବର ରାଧାନାଥଙ୍କ ବର୍ଣ୍ଣନାରୁ ଅନ୍ଦାଜ କରି ନିଅନ୍ତୁ । ଭାରତୀୟମାନଙ୍କ ଲାଗି ପୋଷାକ ହେଲା ଶେରଓ୍ୱାନୀ ଓ ପଗଡି । ଅବଶ୍ୟ ଆପଣ ଇଂରେଜ ପୋଷାକ ପିନ୍ଧି ପାରନ୍ତି । କିନ୍ତୁ ତାହା ଆପଣଙ୍କର ପରିଚିତ ସୁଟ ଓ ଟାଇ ନୁହେଁ । କଳା ଟେଲକୋଟ ଯାହାକି ସାମନାରେ ମାତ୍ର ଅଣ୍ଟା ପର୍ଯ୍ୟନ୍ତ ଓ ପଛଆଡ଼େ ଆଣ୍ଠୁଯାଏ । ଏଣୁ ଟେଲ୍ ବା ଲାଙ୍ଗୁଳ କୋଟ । ତା ସାଥିରେ କଳାଧଳା ଡ଼ୋରିଆ ଟ୍ରାଉଜର । ଧଳା ଓ୍ୱେଷ୍ଟକୋଟ୍ ଓ ବେକରେ କ୍ରାଭାଟ୍ । କିନ୍ତୁ ପଣ୍ଡିତଙ୍କୁ ଦରବାରରେ କିପରି ପେଶ କରାଯିବ ? ଉଭୟ ପୋଷାକ ମ୍ଳେଚ୍ଛବେଶ ହୋଇଥିବାରୁ ପଣ୍ଡିତେ ଧାରଣ କରିବେ ନାହିଁ । ଏହା ମହାନ ପ୍ରୋଟୋକୋଲ୍ ସମସ୍ୟା । ଏହାର ସମାଧାନ ବାହାର କଲେ ବଡ଼ ମୁନଶୀ । ସେ ଗତବର୍ଷ ହରିହର ମେଳାକୁ ଯାଇଥିଲେ ରଜାଘର ଲାଗି ଘୋଡ଼ା କିଣିବା ପାଇଁ । ସେଠି ସେ ମୈଥିଳୀ ପଣ୍ଡିତମାନଙ୍କ ପୋଷାକ ଦେଖିଥିଲେ । ସେ ପଣ୍ଡିତଙ୍କୁ ବହୁତ ବୁଝାଇ ଏକ ଅଙ୍ଗରଖା ପିନ୍ଧିବାକୁ ରାଜି କରାଇଲେ । ଏହା ମଧ୍ୟ ଠିକ୍ ଅଙ୍ଗରଖା ନୁହେଁ । ଏକ ପାଟଖଣ୍ଡିକୁ କାନ୍ଧରେ ପକାଇ ତାହାକୁ ବୁତ ଦ୍ୱାରା ବାନ୍ଧି ଦିଆଗଲା । ତାହା ଉପରେ ପଣ୍ଡିତେ ଉତ୍ତରୀୟ ପକାଇ ଦରବାରକୁ ଯିବାକୁ ରାଜି ହେଲେ ।

ଶେଷରେ ଉକ୍ତ ଶୁଭଦିନ ଉପସ୍ଥିତ ହେଲା । ଇସ୍କୁଲ ଆରମ୍ଭ ହେବାର ଅଧଘଣ୍ଟେ ଆଗରୁ ଆମେ ପିଲାମାନେ ଉପସ୍ଥିତ । ସେଦିନ ହେଡମାଷ୍ଟର ତାଙ୍କ ସାଧାରଣ ପରିଧାନ ଅର୍ଥାତ ଧୋତି ପଞ୍ଜାବୀ ଛାଡ଼ି ପିନ୍ଧିଛନ୍ତି କଳା ଶେରଓ୍ୱାନୀ ଏବଂ ମୁଣ୍ଡରେ ଆଗେ ଓକିଲମାନେ ପିନ୍ଧୁଥିବା ଶମଲା ନାମକ ଏକ କ୍ଷୁଦ୍ର ହଳଦିଆ ପଗଡ଼ି । ଯଥା ସମୟରେ ରେସିଡେଣ୍ଟ ସାହେବ ଆସିଲେ । ତାଙ୍କ ସାଥିରେ ଆଉ ଦୁଇଜଣ ଗୋରା, ଦେଓ୍ୱାନ, ପୁଲିସ ସାହେବ ଇତ୍ୟାଦି ଇତ୍ୟାଦି । ଏକ ଖାସା ପଟୁଆର । ରେସିଡ଼େଣ୍ଟ ସାହେବ କ୍ଲାସ ଦୁଆର ମୁହଁରେ ଠିଆ ହୋଇ ''ହେଲୋ ପାଣ୍ଡିଟ୍'' କହି ଟିକିଏ ହସିଦେଲେ । ଏ ରାଜ ସମ୍ମାନ ପାଇ ପଣ୍ଡିତେ ବିଗଳିତ । ଅର୍ନଗଳ ସଂସ୍କୃତ ଶ୍ଳୋକ ଛାଡିବା ଆରମ୍ଭ କଲେ । ହେଡମାଷ୍ଟର ବିଚକ୍ଷଣ ଲୋକ । ସାଙ୍ଗେ ସାଙ୍ଗେ ତାହାର ଅର୍ଥ ଇଂରାଜୀରେ କରିଦେଲେ ଯାହା ମୋଟା ମୋଟି ହେଲା 'ଗଡ୍

ସେଭ୍ ଦି କିଂ, ଲଂଲିଭ୍ ଦି ରେସିଡ଼େଣ୍ଟ୍ ।' ସାହେବ ଟିକିଏ ହସି ଉଏଭ୍ (Wave) କରି ଚାଲିଗଲେ ।

ଏହା ପରେ ତିନି ଦିନ ଛୁଟି । ଯେଉଁଦିନ ସ୍କୁଲ ଖୋଲିଲା, ସେଦିନ ଟିଚରସ କମନ୍‌ରୁମରେ ହୁଲସ୍ଥୁଲ କାଣ୍ଡ । ପଣ୍ଡିତେ ଦରବାରକୁ ଯାଇଥିଲେ । ସେଠିକି ହେଡ୍‌ମାଷ୍ଟରଙ୍କ ଛଡ଼ା ଅନ୍ୟ ଟିଚ୍‌ରମାନଙ୍କର ପ୍ରବେଶ ନିଷେଧ । କାରଣ ସେଠିକି କେବଳ ଅଫିସର ଯାଇ ପାରିବେ । ସମସ୍ତେ ଅତ୍ୟନ୍ତ ଉତ୍ସୁକ । କଣ ହେଲା ? ପଣ୍ଡିତେ କଣ ପାଇଲେ ? ଅବଶ୍ୟ ପଣ୍ଡିତେ ନିଜର ଟ୍ରଫି ଆଣିବାକୁ ଭୁଲି ନଥିଲେ— ଏକ ଶାଳ ଏବଂ ଏକ ମାନପତ୍ର ବା ସେତେବେଳର କଥାରେ ସନନ୍ଦ୍ । ସବୁ ମାଷ୍ଟରମାନେ ଶାଲର ପ୍ରଶଂସାରେ ପଞ୍ଚମୁଖ । କେତେ ବଢିଆ ପଶମ । କେତେ ସୁନ୍ଦର ଜରିକାମ ଇତ୍ୟାଦି ଇତ୍ୟାଦି । ପଣ୍ଡିତେ ଶେଷକୁ ସେହି ପ୍ରଶ୍ନଟି ପଚାରିଲେ ଯାହାକି ସମସ୍ତେ ଏଡ଼ାଇଯିବାର ଚେଷ୍ଟା କରୁଥିଲେ । 'ଭବାନୀବାବୁ, କହିବଟି ସେହି ସନଦରେ କଣ ଲେଖା ହୋଇଛି' । ଏଣୁ ଅଗତ୍ୟା ଭବାନୀବାବୁଙ୍କୁ ତାହାର ଅନୁବାଦ ଶୁଣାଇବାକୁ ହେଲା । 'ପ୍ରାଚ୍ୟ ବିଦ୍ୟାରେ ଦକ୍ଷତା ଲାଭ କରିଥିବାରୁ (Proficiency in Oriental Learning) ଅମୁକଙ୍କୁ ଏହି ସନନ୍ଦ ପ୍ରଦତ୍ତ ହେଲା ।'

ଶୁଣି ପଣ୍ଡିତେ ଗୁମ୍ ହୋଇ ବସି ପଡ଼ିଲେ । କିଛି ସମୟ ଚୁପ୍ ରହିଲା ପରେ ଆରମ୍ଭ ହେଲା ବକ୍ତୃତା ଓ ପ୍ରଳାପର ମଝି ମଝି ଏକ ପ୍ରବଚନ । 'ପ୍ରାଚ୍ୟ ବିଦ୍ୟା, ପ୍ରାଚ୍ୟ ବିଦ୍ୟା । ଦିଗ ନାମରେ ବିଦ୍ୟା । ତାହାହେଲେ କାଲି ଉତ୍ତର ବିଦ୍ୟା, ନୈଋତ ବିଦ୍ୟା ବାହାରିବ । ତାହାହେଲେ ମୋ ବିଦ୍ୟାଟା ବିଦ୍ୟାହିଁ ନୁହେଁ । କେବଳ ପ୍ରାଚ୍ୟ ବିଦ୍ୟା । କାବ୍ୟବ୍ୟାକରଣ ତୀର୍ଥ, ତର୍କବାଚସ୍ପତି ପ୍ରାଚ୍ୟ ବିଦ୍ୟାରେ ଦକ୍ଷତା ଲାଭ କରିଛନ୍ତି । ତନ୍ତି ଲୁଗାବୁଣାରେ ଦକ୍ଷତା ଲାଭ କରେ । ବିଦ୍ୟାର ଲକ୍ଷ୍ୟ ଜ୍ଞାନ । ପ୍ରାଚ୍ୟ ବିଦ୍ୟା ! ପ୍ରାଚ୍ୟ ବିଦ୍ୟା ! କହି ପାରୁ ନଥିଲେ କାବ୍ୟ ବା ଦର୍ଶନରେ ପାଣ୍ଡିତ୍ୟ ଲାଭ କରିଛନ୍ତି ? ବୁଝିଲ ଭବାନୀ ବାବୁ, ବର୍ତ୍ତମାନ ମୁଁ ସତ୍ୟକୁ ପ୍ରତ୍ୟକ୍ଷ କଲି । ଜାଣିଲି ଯେ ମୋର ବିଦ୍ୟା, ମୋର ପାଣ୍ଡିତ୍ୟର ସାହେବର ଆଖିରେ ମୂଲ୍ୟ କଣ ? ଶାଲ ତ ମହାରାଜାଙ୍କର ପୂଜା କଲାବେଳେ ଘୋଡ଼ି ହେବି । କିନ୍ତୁ ଏ ଶଳା ସନଦକୁ କରିବି କଣ ?'

ସମସ୍ତେ ଚୁପ୍ । ଏହା ତ ପଣ୍ଡିତଙ୍କ ଅପମାନ ନୁହେଁ, ସମସ୍ତ ଭାରତୀୟ ସଭ୍ୟତାର ଇଂରେଜର ଦୃଷ୍ଟିରେ ତୁଚ୍ଛତାର ନିଦର୍ଶନ । ଏଣୁ ସେ ଅପମାନର ଜ୍ୱାଳା ସମସ୍ତଙ୍କୁ ଲାଗୁଛି ।



# ଚିହ୍ନଟ

ଏହି କାହାଣୀଟି ସେ ସମୟର, ଯେତେବେଳେ ଦକ୍ଷିଣପୂର୍ବ ରେଳପଥର ନାଁ ଥିଲା ବେଙ୍ଗଲ ନାଗପୁର ରେଲୱେ । ସେକାଳ ହାଲଚାଲ ଅଲଗା ଥିଲା । ଆଜିକାଲିର ଡ଼ିଜେଲ ଓ ଇଲେକ୍‌ଟ୍ରିକ୍ ଇଂଜିନ କଥା ଛାଡନ୍ତୁ, WP ଷ୍ଟିମ ଇଂଜିନ୍, ଯାହାକୁ ସେତେବେଳେ କାନାଡିଆନ ଇଂଜିନ କୁହାଯାଉଥିଲା, ପ୍ରାୟ ନଥିଲା । ପ୍ରତ୍ୟେକ ତିନି ଚାରି ଷ୍ଟେସନ ପରେ ପାଣି ନେବାର ବ୍ୟବସ୍ଥା ଥିଲା । ବିଶେଷ କରି ମାଲଗାଡ଼ି ସବୁ ଶୀଘ୍ର ଶୀଘ୍ର ପାରି ନେବାକୁ ବାଧ ହେଉଥିଲେ । ତେବେ ମେଲ ଏକ୍‌ସପ୍ରେସ୍ ଗାଡ଼ିକୁ ମଧ୍ୟ ଅନେକ ସ୍ଥାନରେ ପାଣି ପାଇଁ ରହିବାକୁ ପଡୁଥିଲା । ଅଳ୍ପଦିନ ତଳେ ଯେପରି କୋରମଣ୍ଡଳ ଏକସ୍‌ପ୍ରେସ୍ ଖଡ଼ଗପୁର ଛାଡି ସିଧା ଭୁବନେଶ୍ୱରରେ ରହୁଥିଲା, ତା ସେତେବେଳେ କଳ୍ପନାର ବାହାରେ ଥିଲା । ଘଟଣାଟି ଓଡ଼ିଶାର ଗଞ୍ଜାମ ଜିଲ୍ଲାରେ । ତେବେ ଏହା ସହିତ ଗଞ୍ଜାମର କୌଣସି ସମ୍ପର୍କ ନାହିଁ । ଏହା ଯେ କୌଣସି ଅନ୍ୟ ଯାଗାରେ ମଧ୍ୟ ଘଟି ପାରି ଥାଆନ୍ତା ଯଦି ସେ ଭଳି ଭୌଗଳିକ ପରିସ୍ଥିତି ଥାଆନ୍ତା ।

ପ୍ରଣବ ଏ ବର୍ଷ ବି.ଏସ୍.ସି ପରେ ଡ଼େରାଡୁନର ଜଙ୍ଗଲ ମହକୁମାର କଲେଜରେ ଛାତ୍ର । ଡ଼େରାଡୁନ ଅର୍ଦ୍ଧପାର୍ବତ୍ୟ ଯାଗା ହୋଇଥିବାରୁ ତାଙ୍କର ଶୀତ ଛୁଟି ଟିକିଏ ଲମ୍ବା । ପ୍ରଣବ ଛୁଟିରେ କଟକ ଘରକୁ ଆସିଥିଲା । ନାନୀଘର ଆଡୁ ବୁଲି ଆସିବାର ଇଛା । ଭେଣୋଇଁ ନବରଙ୍ଗପୁରରେ । ଏଣୁ ବିଜୟନଗର ଯିବାକୁ ହେବ । କଟକରୁ ଓ୍ୱାଲଟେଅର କୋଚରେ ଉଠିଲା । କିଛି ସମୟ ପରେ ଆଉ ଏକ ପରିବାର ମଧ୍ୟ ଆସି ବସିଲେ । ପିତା, ମାତା ଓ କନ୍ୟା । ପିତାଙ୍କୁ ପ୍ରଣବ ଚିହ୍ନେ । ସେ ପ୍ରଣବର କଲେଜରେ ଅର୍ଥନୀତି ପ୍ରଫେସର । କିନ୍ତୁ ତାଙ୍କର ପ୍ରଣବକୁ ଚିହ୍ନିବାର ଅବକାଶ ନଥିଲା । କନ୍ୟା ସୁନ୍ଦରୀ ତେବେ ଆଖି ଝଲସେଇବା ଝଲମଲ ବିଦ୍ୟୁଲ୍ଲତା ନୁହେଁ । ନିଜର ପ୍ରଫେସର ନ ହୋଇଥିବାରୁ ପ୍ରଣବ ବାର୍ତ୍ତାଳାପର କୌଣସି ଆବଶ୍ୟକତା ଅନୁଭବ କଲା ନାହିଁ । କଟକରେ ମାଡ୍ରାସ ମେଲ ପ୍ରାୟ ଅଧାରାତିରେ ପହଞ୍ଚୁଥିଲା । ସମସ୍ତେ ନିଜ ନିଜ ସ୍ଥାନରେ ଢୁଳେଇବାକୁ ଲାଗିଲେ । ଯଥା ସମୟରେ କୋଚ୍

ମାଡ୍ରାସ ମେଲରେ ଲାଗି ଦକ୍ଷିଣକୁ ଯିବା ଆରମ୍ଭ କଲା । ଗାଡ଼ି ସବୁ ଯାତ୍ରୀମାନଙ୍କୁ ଦୋହଳି ଖେଳାଇ ଶୁଆଇ ଦେଲା ।

ବର୍ତ୍ତମାନ ରାତି ତିନିଟା ଓ ଚାରିଟା ମଝିରେ । ଚାମରପୁର ଏକ ଓ୍ୟାଟରିଂ ଷ୍ଟେସନ । ଏଠି ସବୁ ଗାଡ଼ିକୁ ପାଣି ନେବାକୁ ପଡେ । ଏହାପରେ କିଛି ବାଟ ବେଶ ଉଠାଣି ଏବଂ ଏଠୁ ପାଣି ନନେଇଗଲେ ଉଦ୍ୟାନପୁର ଷ୍ଟେସନ ପର୍ଯ୍ୟନ୍ତ ପାଣି ନାହିଁ । ଏଣୁ ମାଲଗାଡ଼ି କଥା ଛାଡ଼ନ୍ତୁ, ମେଲ୍ ମଧ ଏଠି ପାଣି ନେବାକୁ ବାଧ । ୮୫ ଅପ୍ ମାଲଗାଡ଼ି ଷ୍ଟେସନରେ ଠିଆ ହୋଇଛି । ଅବଦୁଲ୍ଲା ଖାଁ ଡ୍ରାଇଭର ଓ ଭେଙ୍କଟ୍‌ରାଓ ଫାୟାରମାନ । ଅବଦୁଲ୍ଲା ଖାଁ ପଚାରିଲା ଭେଙ୍କଟରାଓ, ଫୁଲ୍ ଓ୍ୟାଟର ଲିୟା ? ଭେଙ୍କଟ ରାଓ ଉତ୍ତର ଦେଲା, 'ହଁ, ମାଷ୍ଟର, ସବ୍ ଠିକ୍ ହୈ ।' ସିଗନାଲ ହୋଇଗଲା । ଦୁଇଥର ହୁଇସିଲ ବଜାଇଲେ । ପଛକୁ ଚାହିଁଲେ ଗାର୍ଡ ଜେନକିନସ୍ ସବୁଜ ଆଲୁଅ ହଲାଉଛି । ଅବଦୁଲ୍ଲା ଖାଁ ଗାଡ଼ି ଛାଡ଼ିଦେଲା । ଷ୍ଟେସନ ଛାଡିବା ପରେ ଏକ ଦୀର୍ଘ ଉଠାଣି ଆରମ୍ଭ ହୁଏ । କୋଇଲା ଓ ଅନ୍ୟାନ୍ୟ ବୋଝାଇ ମାଲଗାଡ଼ି । ଏ ଅବସ୍ଥାରେ ଗାଡ଼ି ତ ଆଉ ପବନ ବେଗରେ ଯିବ ନାହିଁ । ତାର ସେଇ ଚିର ପରିଚିତ ଧିପଦ ତାଳରେ ଙ୍ଗ - ଙ୍ଗଙ୍ଗ -ଙ୍ଗ -ଙ୍ଗ -ଙ୍ଗ ପଖଜ ବଜେଇ ଚାଲିଲା । କିଛି ସମୟ ପରେ ଅବଦୁଲ୍ଲା ଖାଁକୁ କଣ ଗୋଟେ ଅଡୁଆ ଲଗିଲା । ଇଂଜିନ୍‌ର ଶବ୍ଦରୁ ତାକୁ ମନେ ହେଲା ଯେପରି ଇଂଜିନ ଉପରେ ଯୋର ପଡୁଛି । ବାହାରକୁ ଚାହିଁ ଅନୁମାନ କଲା ସେମାନେ କେଉଁଠି । ଦେଖିଲା ଉଠାଣି ଶେଷ ହେବାକୁ ଅଳ୍ପ ବାଟ ଅଛି । ଏଠି ଗାଡ଼ି ବନ୍ଦ କଲେ ଉଠାଣି ଉପରେ ବୋଝେଇ ମାଲଗାଡ଼ି ପୁଣି ଷ୍ଟାଟ ହେବାରେ ଗୋଳମାଳ କରିବ । ଥରେ ଠିଆ ହୋଇଗଲେ ଏ ପୁରୁଣା ଇଂଜିନ୍ ଟାଣି ପାରିବ କି ନାହିଁ ସନ୍ଦେହ । ଏଣୁ ଉଠାଣି ପାର ହୋଇ ସେ ଗାଡ଼ି ଠିଆ କରିବାକୁ ମନସ୍ଥ କଲା ।

ଅବଦୁଲ୍ଲା ଅଭିଜ୍ଞ ଲୋକ । ତାର ସନ୍ଦେହ ଠିକ୍ ଥିଲା । ତାର ନିଜର ସିଦ୍ଧାନ୍ତ ମଧ ଠିକ୍ ଥିଲା । କିନ୍ତୁ ଉଠାଣିର ଶେଷ ହେବାର ଅଳ୍ପ ଆଗରୁ ଗୋଟିଏ ଯାଗାରେ କପ୍‌ଲିଂ ଛିଣ୍ଡିଗଲା ଏବଂ ଗାଡ଼ି ଦୁଇଖଣ୍ଡ ହୋଇଗଲା । କିନ୍ତୁ ସମତଳ ସ୍ଥାନରେ ନଥିବାରୁ ଗଡ଼ାଣି ଅର୍ଥାତ୍ ଚାମରପୁର ଆଡ଼କୁ ଫେରିଲା । ଜେନ୍‌କିନ୍‌ସ୍ ଦେଖିଲା ଭାକୁଅମ ବେକାର । ଉପାୟ ଆଉ କିଛି ନାହିଁ । ଏ ଗାଡ଼ି ଗଡ଼ି ଗଡ଼ି ପୁଣି ଚାମରପୁର ଯିବ, ଯଦି କୌଣସି ଡ଼ବା ଓଲଟି ନପଡେ । ଏହା ପଛେ ପଛେ ମେଲ ଆସିବାର ସମୟ । କିନ୍ତୁ ରକ୍ଷା ଯେ ମେଲ ଚାମରପୁରରେ ରହେ । ଏବଂ ଗାଡ଼ି ଆଉ ଷ୍ଟେସନରେ ନ ପହଞ୍ଚିବା ପର୍ଯ୍ୟନ୍ତ ତ ଲାଇନ୍ କ୍ଲିଅର ହେବ ନାହିଁ । ଏହି ଅଧା ମାଲଗାଡ଼ି କ୍ରମଶଃ ଚାମରପୁର ଆଡ଼କୁ ଯାଉଛି ଓ ତାର ଗତି ବଢୁଛି । ଜେନ୍‌କିନ୍‌ସ କିଂକର୍ତ୍ତବ୍ୟବିମୂଢ଼ ହୋଇ ଠିଆ ହୋଇ ରହିଛି ।

ଏହି ନାଟକର ଅନ୍ୟ ଅଂଶ ଅଭିନୀତ ହେଉଛି ଚାମରପୁରରେ ୪ ଅପ୍ ମେଲରେ ।

ଡ୍ରାଇଭର ମାନଙ୍କପାଇଁ ବନ୍ଦ ପାଣି ନେବାକୁ ଷ୍ଟାର୍ଟ କରିଲା । ଯେହେତୁ ବର୍ତ୍ତମାନ ପ୍ରାୟ ଗାଡ଼ିକୁ ଓ ଟାମରପୁରରେ କୌଣସି ଉଚ୍ଚଶ୍ରେଣୀୟ ଯାତ୍ରୀ ଚଢ଼ନ୍ତି ନାହିଁ। ଏଣୁ ସେ ଇଞ୍ଜିନ୍ ନଲାଗି ପୂରା ଗାଡ଼ିଟା ସହ ଧୀରେ ଧୀରେ ପାଣି କଳ ପାଖକୁ ଯିବା ଆରମ୍ଭ କଲା । ଡ୍ରାଇଭରମାନ ଇଞ୍ଜିନର ଟାଙ୍କ ଉପରକୁ ପାଣି ଭର୍ତ୍ତି କରିବାକୁ ଗଲା । ଏହି ସମୟରେ ମେଲର ହେଡ୍‌ଲାଇଟ୍ ଆଲୁଅରେ ଛିଡ଼ି ଆସୁଥିବା ମାଲଗାଡ଼ିର ଅଂଶଟି ମ୍ୟାନ୍‌ପାଇସନ୍ ଦେଖିବାକୁ ପାଇଲା । ସେ ତତ୍‌କ୍ଷଣାତ୍ ଇଞ୍ଜିନ୍ ଠିଆ କରିଦେଲା ଓ ପାଟିକଲା , 'ଜରଡାର , ଡ୍ରୋଟ୍ ଆଉଟ୍ ।' [illegible]

ଜେନକିନ୍‌ସ୍ ମୁହଁରେ ହେଡ୍‌ଲାଇଟ୍ ଆଲୁଅ ପଡ଼ିଲା , ସାଙ୍ଗେ ସାଙ୍ଗେ ଚେତା ଫେରି ଆସିଲା । ତାର ମନେ ପଡ଼ିଗଲା ସେ ଟାମରପୁରରେ ସେମାନେ ଯେଉଁ ଲାଇନ୍‌ରେ ଗାଡ଼ି ରଖିଥିଲେ ସେହିଥିରେ ହିଁ ମେଲ୍ ଆସେ । ତା ମାନେ ପ୍ରଏଣ୍ଟ ସେହିପରି ଥିବ ଓ ଗାଡ଼ି ଖଣ୍ଡିକ ନେଇକରି ହିଁ ମାଡ଼ ହେବ । ସେ ଗାଡ଼ିରୁ ଓହ୍ଲାଇ ପଳାଇବାର ଚେଷ୍ଟା କଲା । ଓହ୍ଲାଉ ନଥିବା ଟିକିଟ ଚେକରଙ୍କ ଜୀବନ ରକ୍ଷା କରିବାର ଚେଷ୍ଟା କରିଥିଲା । କିନ୍ତୁ ପଡ଼ିଗଲା ଓ ତାପରେ ସେ ମୂର୍ଚ୍ଛିତ ହୋଇଗଲା । ଅଳ୍ପ କିଛି ସମୟ ପରେ ଯାହା ହେବାର ଥିଲା ତା ହେଲା ଓ ମାଲଗାଡ଼ିର ଛିନ୍ନ ଅଂଶଟି ଆସି ମେଲର ଇଞ୍ଜିନ ସହିତ ଧକ୍କା ହେଲା । [illegible]

ପ୍ରଣବ ଅନ୍ୟ ଯାତ୍ରୀଙ୍କ ଭଳିଆ ଶୋଇବା ଓ ଢୁଳେଇବାର ମଧ୍ୟବର୍ତ୍ତୀ ଅବସ୍ଥାରେ ଥିଲା । ହଠାତ୍ ଗୋଟେ ଧକ୍କା ଲାଗି ନିଦ ଭାଙ୍ଗିଗଲା । ଚାହିଁଲା ଗାଡ଼ିଟା ପଛକୁ ଯାଉଛି । ଚାରିଆଡ଼େ ଏକ ଚିତ୍କାର । ତା'ର ଉପର ବର୍ଥଟା ଭାଙ୍ଗି ଗଲା । ଗୋଟେ ବାକ୍ସ ଉପରୁ ପଡ଼ି ତା ମୁଣ୍ଡରେ ବାଜିଲା । ସାଙ୍ଗେ ସାଙ୍ଗେ ଡାକିଲା , ସାର , ସାର । ଏକ ଅଦ୍ଭୁତ ଶବ୍ଦ ତଳୁ ବାହାରୁଛି । ପକେଟରେ ଥିବା ଲାଇଟର ମାରି ସାର ଓ ତାଙ୍କ ପରିବାରକୁ ଉଠାଇଲା । ଯା ଭିତରେ ଗାଡ଼ି କିଛି ବାଟ ଯାଇ ଠିଆ ହୋଇଗଲା । ଦୁର୍ଘଣା ଜାଣିଥିବା ତାର ଟରଚରେ ଚେକିଂ ନଥିଲା । ଏଣୁ ପ୍ରଣବ ଝରକା ବାଟେ ବାହାରିଗଲା । ପଡ଼ିଯାଇଥିବା ଟ୍ରଙ୍କ ଓ ଜିନିଷ ଲାଗି ଦୁଆର ଖୋଲୁନଥିଲା । ଏଣୁ ସେହି ଝରକାବାଟୁ ପ୍ରଫେସରଙ୍କୁ ସପରିବାର ଟାଣି ବାହାର କଲା । ଇତି ମଧ୍ୟରେ ଆଉ କେତେ ଲୋକ ମଧ୍ୟ ବାହାରି ଆସିଥିଲେ । ପ୍ରଣବ ସେମାନଙ୍କ ସହିତ ସହାୟତା କାର୍ଯ୍ୟରେ ଲାଗିଗଲା । ଅଳ୍ପ ସମୟ ଭିତରେ ବହୁ ରେଳ କର୍ମଚାରୀ ମଧ୍ୟ ଆସିଗଲେ ଏବଂ ସହାୟତା କାର୍ଯ୍ୟ ପୁରାପୁରି ଶୃଙ୍ଖଳାର ସହିତ ଚାଲିବାକୁ ଲାଗିଲା । ପ୍ରଣବ ଦେଖିଲା ଝିଅଟିର କପାଳରୁ ରକ୍ତ ବୋହୁଛି । ସେଠି ନିଜ ରୁମାଲଟା ବାନ୍ଧିଦେଲା । ଝିଅଟି ଆପତ୍ତି କରିବାରେ ଅସମର୍ଥ ଥାଇ ଲାଜିଲା । କିନ୍ତୁ ତାର ସେ ବିନ୍ଦୁ ବାପା ମାଙ୍କ ଅପେକ୍ଷା ଆଗରୁ ଫେରି ଆସିଥିଲା । ସେ ପ୍ରଣବକୁ କହିଲା , 'ଆପଣଙ୍କ ଆଖି ଉପରେ ଫାଟିଆ ହୋଇ ଯାଇଛି ।' ପ୍ରଣବ ଦେଖିଲା ସତେ । ତାକୁ କୋଉଁ ଗଲ ହୋଇଥିଲା । ଏଣୁ ସେ ପାଣି ଟାଙ୍କରେ

ବାହାରିଲା । ଏହା ପରର ଘଟଣାବଳୀ ଦସ୍ତାବେଜ ମାଧ୍ୟମରେ ପ୍ରେଷ କରିବା ଉଚିତ ମନେ କଲେ।

**ଦୈନିକ ଲୋକଚକ୍ଷୁରୁ**

**ଟାମରପୁର ଷ୍ଟେସନରେ ରେଳ ଦୁର୍ଘଟଣା**

**୪୨ ଜଣ ଆହତ**

**(ନିଜସ୍ୱ ସମ୍ବାଦଦାତାଙ୍କ ଠାରୁ)**

୧୮/୧୨- ଆଜି ସକାଳ ଚାରିଟା ସମୟରେ ଟାମରପୁର ଷ୍ଟେସନରେ ଏକ ରେଳ ଦୁର୍ଘଟଣା ହୋଇ ଯାଇଛି । ପଲାସା ଆଡକୁ ଯାଉଥିବା ଏକ ମାଲଗାଡ଼ି ଟାମରପୁର ଓ ଘୋଡାପାଲି ଷ୍ଟେସନ ମଧ୍ୟରେ ଛିଣ୍ଡିଯାଇ ତାର ପଛ ଅଂଶ ଟାମରପୁର ଷ୍ଟେସନକୁ ଗଡ଼ିଆସି ପାଣି ନେଉଥିବା ମାଡ୍ରାସ ମେଲ ସହିତ ଧକ୍କା ହୋଇଗଲା । ଏଥିଯୋଗୁଁ ମାଡ୍ରାସ ମେଲର ୪୨ ଜଣ ଯାତ୍ରୀ ସାମାନ୍ୟ ଆହତ ହୋଇଛନ୍ତି । କିନ୍ତୁ ମାଲଗାଡିର ଗାର୍ଡ ଡବଲ୍ୟୁ ଜେନକିନସ୍ ଗୁରୁତର ଭାବେ ଆହତ ହୋଇ ବର୍ତ୍ତମାନ ଖୋର୍ଦ୍ଧାରୋଡ୍ ରେଳବାଇ ଡ଼ାକ୍ତରଖାନାରେ ଚିକିତ୍ସିତ ହେଉଛନ୍ତି । ଏହି ଦୁର୍ଘଟଣା ଯୋଗୁଁ ମାଡ୍ରାସ ମେଲ ପାଞ୍ଚ ଘଣ୍ଟା ଡେରିରେ ଟାମରପୁର ଛାଡ଼ିଲା ।

ଏହାପରେ ଦଲିଲ ଦସ୍ତାବେଜ ଅନେକ । କିନ୍ତୁ ଆଇନଗତ ଭାବେ ପ୍ରକାଶ ଯୋଗ୍ୟ ନୁହେଁ, ପ୍ରକାଶଯୋଗ୍ୟ ଦସ୍ତାବେଜ ଏହି ଘଟଣାର ଦେଢ଼ବର୍ଷ ପରେ । ଉଦ୍ଧୃତି ତଳେ ଦିଆଗଲା ।

ଓଁ ପ୍ରଜାପତୟେ ନମଃ !

ମହାଶୟ

ମୋର କନ୍ୟା ଆୟୁଷ୍ମତୀ ନିହାରିକାର ଶୁଭପରିଣୟ ବାଲେଶ୍ୱର ଜିଲ୍ଲାର ଭୋଗରାଇ ନିବାସୀ ଶ୍ରୀ ରମେଶଚନ୍ଦ୍ର ମହାପାତ୍ରଙ୍କ ପୁତ୍ର ଆୟୁଷ୍ମାନ ପ୍ରଣବଙ୍କ ସହିତ ଅନୁଷ୍ଠିତ ହେବ । ଏଣୁ ଅନୁରୋଧ ଆପଣ ସପରିବାର ଯୋଗଦାନ କରି ନବଦମ୍ପତିଙ୍କୁ ଆଶୀର୍ବାଦ କରିବା ହେବେ । ପତ୍ର ଦ୍ୱାରା ନିମନ୍ତ୍ରଣ ତ୍ରୁଟି ମାର୍ଜନା କରିବେ ।

। ଇତି ।

ଜଗନ୍ନାଥ ଚରଣ ଦାସ

| | |
|---|---|
| ପାଣିଗ୍ରହଣ-ଦିବା ୧୨-୪୫ | ସ୍ଥାନ- ମଦୀୟ ବାସଭବନ |
| ପ୍ରୀତି ଭୋଜନ- ରାତ୍ର ୮ଟା | ପ୍ରଫେସରପଡା, କଟକ-୩ |

ଦୁଇବର୍ଷ ପରର ଘଟଣା । ଗୋଟିଏ ରାତ୍ରିଭୋଜନ ଉପଲକ୍ଷରେ ପ୍ରଣବ ଓ ତା ସ୍ତ୍ରୀ ଜଣେ ବନ୍ଧୁଙ୍କ ଘରକୁ ଯାଇଥିଲେ । ଜଣେ ନିମନ୍ତ୍ରିତ ମହିଳା ପଚାରିଲେ, ମିଷ୍ଟର ଓ ମିସେସ୍ ମହାପାତ୍ର, ଉଭୟଙ୍କର ମୁହଁରେ ପ୍ରାୟ ଏକା ଯାଗାରେ କ୍ଷତଚିହ୍ନ ଅଛି । ଏଥିଲାଗି ସେମାନେ କଣ ପରସ୍ପରକୁ ବାଛି ଥିଲେ ? ଜଣେ ଭଦ୍ରଲୋକ ଯେ ସମସ୍ତ ଘଟଣାକୁ ଜାଣିଥିଲେ ଉତ୍ତର ଦେଲେ —'ନାହିଁ ଆଜ୍ଞା, ଦଇବ ଏ ଦୁଇଜଣଙ୍କୁ ପରସ୍ପର ଲାଗି ବାଛି ସାରିଲା ପରେ କାଳେ ସଂସାରରେ ଲୋକଗହଳିରେ ହଜିଯିବେ ବୋଲି ଚିହ୍ନଟ ଲଗାଇ ଦେଇଥିଲା ।'



# ବୀର ଓଡ଼ିଆ

ଆଜକୁ ପ୍ରାୟ ପଚାଶବର୍ଷ ତଳେ ଠିକ୍ ସ୍ୱର୍ଣ୍ଣଯୁଗ ନ ହେଲେ ମଧ ଆଜିଠାରୁ ସମସ୍ତ ଅବସ୍ଥା ଅନେକ ଭାବରେ ଭିନ୍ନ ଥିଲା । ଗାଡ଼ିରେ ଭିଡ଼ ନଥିଲା କାରଣ ସେ ସମୟରେ କଟକରୁ ପୁରୀ ଯିବାଟା ଏକ ବିରାଟ ଯାତ୍ରା ଓ ଲୋକେ ଓଡ଼ିଶାରୁ ଦିଲ୍ଲୀ ଗଲେ ଭ୍ରମଣ କାହାଣୀ ଲେଖି ପକାଉଥିଲେ । କୌଣସି ବଡ଼ ଅଫିସରକୁ କହିଲେ ଚାକିରିଟେ ମିଳି ଯାଉଥିଲା । ତେବେ ବଡ଼ ଅଫିସରକୁ ଧରିବା ଅସମ୍ଭବ ନ ହେଲେ ମଧ ଅତ୍ୟନ୍ତ କଠିନ ଥିଲା । କାରଣ ସେ ସମସ୍ତେ ଥିଲେ ଗୋରା । ଏଣୁ କାର୍ଯ୍ୟତଃ ବୋଧହୁଏ ବିଶେଷ ତଫାତ୍ ନଥିଲା । ତେବେ ପୁରୁଷୋତ୍ତମ କ୍ଷେତ୍ରର ପିଲାଙ୍କ କଥା ସ୍ୱତନ୍ତ୍ର । କାରଣ ପୁରା, ଯାତ୍ରୀ ନାମକ ଗାଈକୁ ଦୋହିଁଲେ ତ ଖାଇବ । ଏଣୁ ସେ ଯାତ୍ରୀ ଯେଉଁଠି ଥାଉ ତାକୁ ଶ୍ରୀ ଜଗନ୍ନାଥ ଦର୍ଶନ କରାଇବାକୁ ଆଣିବାକୁ ହେବ । ଫଳତଃ ପ୍ରତିବର୍ଷ ପୁରୀରୁ କେତେକ ଲୋକ ଭାରତର ଦୂରଦୂରାନ୍ତ ଅଞ୍ଚଳକୁ ଯାଉଥିଲେ ଏବଂ ତା ଫଳରେ ପୁରୀର ବାଲିସାହିର ଯଦି ଜଣେ ସୁଆର କହନ୍ତି, 'ସିଂହ କେ ବଚ୍ଚେକୋ ଝପଟ ସିଖାଏ କୌନ', ତାହା ସେହିପରି ସହଜରେ ଗୃହୀତ ହେବ ଯେପରି ଏକ ଓଡ଼ିଆ ପ୍ରବାଦ । ଏହାର ଆଉ ଏକ ଫଳ ଯେ, ପୁରୀରେ କେତେକ ଯୁବକ ଭାରତର ଦୂରଦୂରାନ୍ତ ଅଞ୍ଚଳକୁ ଯାଉଥିଲେ ଏବଂ ତା ଫଳରେ ପୁରୀର ସଂସ୍କୃତିରେ 'ବାଟକୁ ଯିବା' ଏକ ଅନ୍ତରଙ୍ଗ ଅଂଶ ହୋଇ ସାରିଥିଲା ।

ଦୀନବନ୍ଧୁ ମିଶ୍ର ଏପରି ଏକ ଯୁବକ । ମାଟ୍ରିକ୍ ପାସ୍ କଲାପରେ ତାଙ୍କର କକେଇ ଜବଲପୁରରେ ସରକାରୀ ଓକିଲଙ୍କୁ ଧରିଲେ ପୁତୁରାକୁ ଖଣ୍ଡେ ଚାକିରି କରାଇ ଦେବାକୁ । ସରକାରୀ ଓକିଲ ଧନୁର୍ଦ୍ଧାରୀ ସିଂହ ଚୌହାନ ଦୀନବନ୍ଧୁର କକେଇଙ୍କର ଜଜମାନ ହୋଇ ଥିବାରୁ ସାହେବମାନଙ୍କୁ ଧରି ଜବଲପୁର ତୋପକାରଖାନାରେ ଷ୍ଟୋର ବିଭାଗରେ ଖଣ୍ଡେ ଚାକିରି କରାଇ ଦେଇଥିଲେ । କାହାଣୀ ସମୟରେ ଦୀନବନ୍ଧୁ ସେଠି ଷ୍ଟୋର ସୁପରଭାଇଜର । ଭିନ୍ନ ଭିନ୍ନ ବିଭାଗରେ ଆଉ ଚାରିଜଣ ପୁରୀର ଟୋକା ମଧ ଅଛନ୍ତି । ସମସ୍ତେ ଉପରଲିଖିତ ସୁପାରିଶ ପଦ୍ଧତିରେ ଆସିଛନ୍ତି । ଏମାନେ ସହରର ବିଭିନ୍ନ ପଡ଼ାରେ ରହୁଥିଲେ । ଖବର ପାଇଲେ ଯେ ଦୀନବନ୍ଧୁର ମୁରବୀ ଧନୁର୍ଦ୍ଧାରୀଙ୍କର ବନ୍ଧୁକର ଗୋଟିଏ ଖାଲି ବଙ୍ଗଳା ଏଲଗିନ

ରୋଡ଼ରେ ଅଛି । ଜାଗାଟା ସୌଖିନ ନୁହେଁ କାରଣ ସିଭିଲ ଲାଇନ ଓ କାଣ୍ଟନମେଣ୍ଟ ମଝିରେ । ଆଖ ପାଖରେ ସାହେବ ନ ହନ୍ତି । ତେବେ ଅନେକ ଗରିବ ଲୋକଙ୍କ ବସ୍ତି । ଇଛା ଥିଲା ଯଦି ସବୁ ପୁରୀବାଲା ଗୋଟେ ଘରେ ରହନ୍ତି ତାହେଲେ ଅନେକ ଅସୁବିଧା । ସାଙ୍ଗ ସାଥୀ ହୋଇ ରହନ୍ତେ । ବଙ୍ଗାବଟି ପ୍ରୋଗ୍ରାମଟା ଠିକ୍ ଭାବେ ଚଳନ୍ତା । ସଙ୍ଗୀତ ଇତ୍ୟାଦି ଚର୍ଚ୍ଚା ମଧ ନିରାପଦ ହୁଅନ୍ତା । ଅର୍ଥାତ୍ ବଙ୍ଗଳା ହୋଇଥିବାରୁ ପଡୋଶୀଙ୍କୁ ଶୁଭିବ ନାହିଁ କି ତାଙ୍କଠାରୁ ଆପତ୍ତି ମଧ ହେବ ନାହିଁ । ଏଠି କହିଦେବା ଉଚିତ୍ ଯେ, ସେମାନଙ୍କ ସଙ୍ଗୀତ ଚର୍ଚ୍ଚା ସମ୍ବନ୍ଧରେ ଆପତ୍ତି କରିବାର କାରଣ ଯଥେଷ୍ଟ । କାରଣ ଏମାନଙ୍କର ନାଦବ୍ରହ୍ମରେ ନାଦଟାହିଁ ବେଶି । ଅର୍ଥାତ୍ ପାଟକପାଣି ପରେ ପଖଜ ଧରି ତାରସ୍ୱରରେ ସମବେତ ଚିତ୍କାର 'ଆଜ ଏ କି ଶୁମାନରେ ଚନ୍ଦ୍ରାନନା' । ଆଖଙ୍କୁ ଚନ୍ଦ୍ରାନନା ଅନୁପସ୍ଥିତ । ନିଶ୍ଚେତ ତାଙ୍କ ପ୍ରତିକ୍ରିୟା କଣ ହୋଇଥାନ୍ତା ଭାବିବା ଦୁଷ୍କର । ସବୁଠାରୁ ବଡ଼ ଆବଶ୍ୟକତା ଆମିଷ । ଏମାନେ ଶୁଦ୍ଧ ସାତ୍ୱିକ ଆହାର ଖାଇ ହଇରାଣ ହୋଇଗଲେଣି । ପୁଣି ଉଚ୍ଚବର୍ଣ୍ଣର ହୋଇଥିବାରୁ ଏମାନେ ମାଗିଲେ ମଧ କେହି ଏମାନଙ୍କୁ ଆମିଷ ଦେବେନାହିଁ । ଏପରିକି ଥରେ ଦୀନବନ୍ଧୁ ଷ୍ଟେସନରେ ମହମଡାନ୍ ରିଫ୍ରେଶମେଣ୍ଟ ରୁମରୁ ମାଂସ ଆଣିବାର ଚେଷ୍ଟା କରିଥିଲା । କିନ୍ତୁ ମ୍ୟାନେଜର ତାକୁ ଚିହ୍ନିଦେଲା । କହିଲା- ପଣ୍ଡିତଜୀ, 'ଯେ ଅପକେ ଲିଏ ନାହିଁ ହୈ । କ୍ୟୋଁ ହମେ ପରେଶାନୀମେ ଡାଲତେ ହୈ ।' ଅର୍ଥାତ୍ ନର୍ମଦା ନଦୀରେ ଅଯାଚିତ ଉପାଦେୟ ମତ୍ସ୍ୟ ପ୍ରଚୁର । ଏଭଳିଆ ନିରୋଳା ବଙ୍ଗଳା ସବୁ ଦିଗରୁ ସୁବିଧା । ଏଣୁ 'ନଜରି ଲାଗା ରାଜା ତୋରେ ବଙ୍ଗଲେ ପର ।'

ଦୀନବନ୍ଧୁ ତାର ମୁରବୀ ଚୌହାନ ସାହେବଙ୍କୁ ଧରିଲା । କଥାଟା ଶୁଣି ଚୌହାନ ସାହେବ ଅତ୍ୟନ୍ତ ଆଶ୍ଚର୍ଯ୍ୟ । ସେ ଜାଗାଟାରେ ତ କେହି ରହନ୍ତି ନାହିଁ । ବହୁକାଳ ତଳେ ଜଣେ ସାହେବର ଖୁନ ହୋଇଥିଲା । ସାହେବର ଖାନସମାହିଁ କରିଥିଲା । ଖାନସମାର ସ୍ତ୍ରୀ ସହିତ ସାହେବଙ୍କର ଗୁପ୍ତ ପ୍ରଣୟ ଖାନସାମା ଜାଣି ପକାଇବାରୁ ପ୍ରଣୟୀ ଯୁଗଳଙ୍କୁ ହତ୍ୟାକରି ସେ ଆତ୍ମହତ୍ୟା କରିଥିଲା । ଏଣୁ ସେହି ଅଶାନ୍ତ ଆତ୍ମାମାନେ ସେ ଜାଗାରେ ନାନା ଉତ୍ପାତ କରନ୍ତି ଏବଂ କେହି ସେଠି ତିଷ୍ଠି ପାରେ ନାହିଁ । ସେଠି ଅଧିକାଂଶ ଭଡ଼ାଟିଆ ଗୋଟିଏ ଦିନରେ ତ୍ରାହି ତ୍ରାହି ଡାକି ପଳାଇ ଆସିଛନ୍ତି । କିନ୍ତୁ ଦୀନବନ୍ଧୁ ବୁଝାଇ କହିଲା - ସେମାନେ ଜଗନ୍ନାଥ ଧାମର ନୈଷ୍ଠିକ ବ୍ରାହ୍ମଣ । ସେଠି ଉପଯୁକ୍ତ ତନ୍ତ୍ରମତରେ ପ୍ରେତଶାନ୍ତି ଲାଗି ପୂଜାପାଠ କରି ସ୍ଥାନ ଶୋଧନ କରି ତା ପରେ ରହିବେ । କିନ୍ତୁ ଚୌହାନ ସାହେବ ସାବଧାନ କଲେ, 'ଦେଖ ହଠକାରିତା କରନାହିଁ । ଭୂତମାନେ ତ କେହି ହିନ୍ଦୁ ନୁହନ୍ତି । ସାହେବ ଖ୍ରୀଷ୍ଟାନ । ଖାନସାମା ମୁସଲମାନ । ତା ସ୍ତ୍ରୀ ମଧ ମୁସଲମାନ । ଏଣୁ ସେମାନେ କାହିଁକି ତୁମ ସଂସ୍କୃତ ମନ୍ତ୍ର ଶୁଣିବେ ?' ଏହାର ଉତ୍ତରରେ ଦୀନବନ୍ଧୁ କହିଲା ଯେ, ସେ ଯାଇ ଆଗ ସେଠି ପୂଜା

କରିବ । ତା'ର ବିଶ୍ୱାସ ଯେ ଭୂତମାନଙ୍କ ଧର୍ମ ନାହିଁ । ସେ ଭୂତ ହେଉନା କାହିଁକି, ଉତ୍ତର ଦେଶ ଲୋକଙ୍କୁ ବାଧ୍ୟ । ଯଦି ଦେଖେ ଯେ ପାରୁନାହିଁ ତା ହେଲେ ଛାଡ଼ିଦେବ । କିନ୍ତୁ ବଙ୍ଗଳାଟା ଯଦି ଶୁଦ୍ଧ କରି ନିଆଯାଇ ପାରେ ତା ହେଲେ ତା'ର ଓ ତା'ର ବନ୍ଧୁମାନଙ୍କ ପକ୍ଷରେ ଅନେକ ସୁବିଧା । ଠାକୁର ଯା ହେଉ ମଧ୍ୟ ଦେଖିଲେ ଯେ ବଙ୍ଗଳାଟା ଯଦି ଏ ପିଲାମାନେ ବ୍ୟବହାର କରିପାରନ୍ତି ତା ହେଲେ କିଛି ଭଡ଼ା ତ ଆସିବ । ସବୁଠାରୁ ବଡ଼ କଥା ହେପାଜତରେ ରହିବ । ଏଣୁ ସେ ତାଙ୍କ ବନ୍ଧୁଙ୍କୁ କହି ମାସକୁ ପାଞ୍ଚଟଙ୍କାରେ ସେ ବଙ୍ଗଳାଟାକୁ କରାଇଦେଲେ ।

ଦୀନବନ୍ଧୁ ଓ ତାଙ୍କ ସାଙ୍ଗମାନେ ସେଠି ରହିଗଲେ । ପୁରୁଷୋତ୍ତମକ୍ଷେତ୍ରର ଜୀବନ ଶୈଳୀ ଅର୍ଥାତ୍ ସଙ୍ଗୀତ, ସଙ୍ଗାତ ଓ ପଙ୍ଗତ ଜମି ଉଠିଲା । ସେଠି ଯଦି କେହି ଭୂତ ଥିଲେ ସେମାନେ କର୍ଣ୍ଣପଟହ ବିଦାରକ ପଖଉଜ ମାଡ଼ରେ ହାହିଁ କାହିଁ ଛାଡ଼ି ସେ ସ୍ଥାନ ତ୍ୟାଗ କରିବାକୁ ବାଧ୍ୟ ହେଲେ । ନିକଟବର୍ତ୍ତୀ ବସ୍ତିମାନଙ୍କରେ ଥିବା ଲୋକଙ୍କର ଏମାନଙ୍କ ପ୍ରତି ଭକ୍ତି ମଧ୍ୟ ବଢ଼ିଗଲା । ଏମାନଙ୍କର ଆମିଷ ଲୋଭ ଏବଂ ଦୁଃସାହସ ଉଭୟ ହିଁ ଲୋକମାନଙ୍କ ମନରେ ଧାରଣା ଜମାଇ ଦେଲା ଯେ ଏମାନେ ତାନ୍ତ୍ରିକ ସାଧକ । ଏଣୁ କ୍ଷତି କରିବାର ମଧ୍ୟ କ୍ଷମତା ଅଛି । ଏହି ସନ୍ଦେହରେ ଏମାନେ ଜନସାଧାରଣଙ୍କଠାରୁ ଉପଢ଼ୌକନ ମଧ୍ୟ ପାଇଲେ । ଅର୍ଥାତ୍ ବସ୍ତିବାଲାମାନେ ଚାନ୍ଦା, ପୁରସ୍କାର କରିବା, ଟଙ୍କାଏ ଅଧେ ଆଣିଦେବା ଇତ୍ୟାଦି ଦ୍ୱାରା ଏହି ସାତଭାଇଙ୍କ କୋପଦୃଷ୍ଟିରେ ନପଡ଼ିବାର ଉପାୟ କଲେ । ମୋଟାମୋଟି ପୂଜାବାଡ଼ି କହୁଥିଲେ ପୁଅ ବାବା । ବଙ୍ଗଳାର ମଧ୍ୟ ଶ୍ରୀ ଫେରି ଆସିଲା । ଶିଥିଳ ଜାଲନରୁ କାଣ୍ଡନ୍ତେଣ ଆଜିକୁ ଯାଉଥିବା ପଥଚାରୀଙ୍କର ମଧ୍ୟ ଦୃଷ୍ଟି ଆକର୍ଷଣ କଲା । ଗାଁରିଆରେ କଥା ବ୍ୟାପିଗଲା ଯେ ଜଗନ୍ନାଥଙ୍କର ଆସିଥିବା କେତେକ ଟୋକା ସେ ଭୂତବଙ୍ଗଳାରେ ରହିବାକୁ ସମର୍ଥ ହେଲେଣି ।

ବଙ୍ଗଳାର ମାଲିକ ହରକିଶନ୍ ଲାଲ ଅତ୍ୟନ୍ତ ଲୋଭୀ । ଦେଖିଲେ ଯେ, ଏ ପିଲାମାନେ ତ ବଙ୍ଗଳାଟାକୁ ବାସଯୋଗ୍ୟ କରି ସାରିଲେଣି । ବର୍ତ୍ତମାନ ଭଡ଼ା ଦେଲେ ନିଶ୍ଚୟ ତିରିଶ ଟଙ୍କା ପର୍ଯ୍ୟନ୍ତ ଉଠିବ । ତେବେ ଭୟଟା ଲାଲାଜୀଙ୍କ ମନରୁ ପୂରାପୂରି ଯାଉନାହିଁ । ଯଦି ଏ ଟୋକାଙ୍କ ଭିତରେ କେହି ସାଧକ ଅଛି ଓ ପ୍ରେତ ବଶ କରି ପାରିଛି ତା ହେଲେ ଏମାନେ ଚାଲିଗଲେ ପୁଣି ପୂର୍ବରୁ ଯେମିତି ପ୍ରେତ ଉତ୍ପାତ ଆରମ୍ଭ ହୋଇଯାଇପାରେ । ସେଥିରେ ବର୍ତ୍ତମାନ ଯାହା ମିଳୁଛି ତା ମଧ୍ୟ ଯିବ । ତା ଭଡ଼ା ଯଦି ସେ ବଢ଼ାଇଦିଏ ତା ହେଲେ ପ୍ରେତଙ୍କୁ ଲଗାଇଦେଇ ପାରନ୍ତି । ତାଙ୍କ ଆଗରେ ଭୟଙ୍କର ପରିସ୍ଥିତି । ଲାଲାଜୀ ଲୋଭ ଓ ଭୟ ଏହି ଦୋଦୋପାଞ୍ଚରେ ପଡ଼ି କିଛି ସ୍ଥିର କରିପାରୁନାହାନ୍ତି । ଭିତିରି ଖବର ନେବାର ଚେଷ୍ଟା କଲେ । ବସ୍ତିବାଲା ତ ଟୋକାଙ୍କ ଭକ୍ତ । ଏଣୁ ତାଙ୍କ ରିପୋର୍ଟରୁ ଜଣାଗଲା ଯେ, ଏ ଟୋକାମାନେ ଶଙ୍କରାଚାର୍ଯ୍ୟଙ୍କ ସମକକ୍ଷ ଏବଂ ମହାମାନବୀଙ୍କର ଏମାନଙ୍କ ଉପରେ ବିଶେଷ କୃପା । ଅତଏବ ଏମାନେ

ଖାଲି ବଙ୍ଗଳାରୁ ନୁହେଁ, ଏ ସାରା ଅଞ୍ଚଳରୁ ଉତ୍ପାତ ଚଡି ସାରିଲେଣି ।

ସାଙ୍ଗେ ସାଙ୍ଗେ ଦୀନବନ୍ଧୁଙ୍କୁ ଖବର ହୋଇଗଲା । ଅତଏବ ସନ୍ଧ୍ୟାବେଳେ ଏ ସମସ୍ୟାର ଆଲୋଚନା ହେଲା । ସ୍ଥିର ହେଲା ଯେ ଯଦି ସମ୍ଭବ ହୁଏ ତା ହେଲେ ଲାଲାଜୀଙ୍କୁ ଦିନେ ସନ୍ଧ୍ୟାବେଳେ ଏଠିକି ନିମନ୍ତ୍ରଣ କରି ତାଙ୍କୁ ହାତେ ଉଚ ଦେଉଳରେ ବାରହାତ ଦେବତା ଦେଖାଇଦିଆଯାଉ । ଇଂଲିଶରେ ଯାହାକୁ କହନ୍ତି Brainwashing ।

ପିଲାମାନଙ୍କୁ କିଛି ପରିଶ୍ରମ କରିବାକୁ ପଡ଼ିଲା ନାହିଁ । ଲୋଭ ବଳୀୟାନ । ଲାଲାଜୀ ନିଜେ ଦୀନବନ୍ଧୁ ପାଖକୁ ଆସିଲେ । 'ବାବୁଜୀ, ଆପଣମାନେ କୁଶଳରେ ଅଛନ୍ତି ତ ?'

ଦୀନବନ୍ଧୁ କହିଲେ, 'ଜଗନ୍ନାଥଜୀଉ କୃପା ଓ ଗୁରୁଜନଙ୍କର ଆଶୀର୍ବାଦରୁ ଆମର ସମସ୍ତ କୁଶଳ । ଆପଣଙ୍କର ସମସ୍ତ କୁଶଳ ତ ?' ଲାଲାଜୀ– 'ହଁ ବାବୁଜୀ, ସବ୍ କରନେୱାଲା ରଣଛୋଡ଼୍ଜୀ । ତେବେ କଣ ନା ଏ ଘରଟାର ଆଗେ ବଦନାମ ଥିଲା । କେହି ରହୁ ନଥିଲେ । ଆପଣମାନେ ରହିବାରୁ ଘରର ଶ୍ରୀ ଫେରି ଆସିଛି । ତେବେ ଜାଣିବାକୁ ପଚାରିଲି ଏଠି କଣ ସତରେ-ହେଁ-ହେଁ ସେମାନଙ୍କର ଆତଯାତ ଥିଲା ?'

ଦୀନ– 'ଆମେ ଆସିବା ଆଗର କଥା କହିପାରିବି ନାହିଁ । ତେବେ ବସ୍ତିବାଲା ଆସନ୍ତି କେବଳ ସକାଳ ଓ ଉପରଓଳି । ଖରାବେଳେ ଓ ରାତିରେ ଆସନ୍ତି ନାହିଁ ।'

ଲାଲାଜୀ– 'ମୁଁ ମଣିଷଙ୍କ କଥା କହୁ ନାହିଁ । ଆଉ କିଛି ଛାଇ ଇତ୍ୟାଦି ।'

ଦୀନ – 'ଓ ବୁଝିଲି, ଆପଣ ପ୍ରେତ, ଯୋଗିନୀ କଥା କହୁଛନ୍ତି । ଲାଲାଜୀ, ସେମାନେ ବଡ଼ ଦୁଃଖୀ ପ୍ରାଣୀ । ତାଙ୍କ ପ୍ରତି ତ ଆମେ ଦେହଧାରୀଙ୍କର ଦୟା କରିବା ଉଚିତ ।'

ଲାଲାଜୀ– 'ଆଜ୍ଞା ସେହି କଥା କହୁଥିଲି । ଏଠି କ'ଣ ସେମାନଙ୍କର ଚଳପ୍ରଚଳ ଅଛି ?'

ଦୀନ– 'ଆପଣ କାଲି ସନ୍ଧ୍ୟାବେଳେ ଆସୁନାହାନ୍ତି ? କାଲି ତ ସୋମବାର । ମହାଦେବଙ୍କର ପୂଜା ହେବ । ପ୍ରସାଦ ପାଇବେ । ତା ଛଡ଼ା ଭଜନ କୀର୍ତ୍ତନ ମଧ ହେବ । ସଙ୍ଗୀତ ଶୁଣିବେ । ମୋର ଦୁଇଜଣ ବନ୍ଧୁ ଭଲ ଗାଆନ୍ତି । ଆନନ୍ଦ ପାଇବେ ।'

ଲାଲାଜୀ– 'ହଉ ଚେଷ୍ଟା କରିବି ।'

ଲାଲାଜୀ ଯିବା ପରେ ପୁଣି ଥରେ ଆଲୋଚନା ହେଲା । କାର୍ଯ୍ୟକ୍ରମ ମଧ ସ୍ଥିର ହୋଇଗଲା । ତା ଆରଦିନ ଯଥା ସମୟରେ ଲାଲାଜୀ ତାଙ୍କର ଜଣେ ବନ୍ଧୁଙ୍କୁ ସାଙ୍ଗରେ ଧରି ପହଞ୍ଚିଲେ । ତଳେ ଘରେ ଗାଲିଚା ପକାଇ ବସିବାର ସୁବନ୍ଦୋବସ୍ତ କରାଯାଇଥିଲା । ଆଜି ଲାଲାଜୀଙ୍କ ଅଭ୍ୟର୍ଥନା ଲାଗି ଯେଷୋଇ ଥଣ୍ଡାଇ ମଧ ବ୍ୟବସ୍ଥା କରାଯାଇଛି । ସଙ୍ଗୀତର ଆସର ଜମି ଆସିଲା । ଗୀତ ସାଙ୍ଗେ ସାଙ୍ଗେ ନାନା ପ୍ରକାର ଆଲୋଚନା । ପଣ୍ଡିତ ଭାତଖଣ୍ଡେଙ୍କର ଅବଦାନ ଭାରତୀୟ ସଙ୍ଗୀତକୁ କେତେ । ଭାତଖଣ୍ଡେଜୀଙ୍କର ସଙ୍ଗୀତକୁ ଶ୍ରୁତିରୁ ସ୍ମୃତିକୁ ନେଇ ଆସିବାଟା ଉଚିତ ହେଲାକି । ଗୁଣୀମାନଙ୍କର ସଙ୍ଗଲାଭ କଲେ କେତେ

ଲାଭ । ଯଥା ଉସ୍ତାଦ ଅମୀର ଖାଁଙ୍କ କୁକୁର ମଧ ମାଇ-କୌସ ରାଗରେ ଭୁକେ । ଇତ୍ୟାଦି..... ଇତ୍ୟାଦି.... ମଝିରେ ମଝିରେ ଭୀଷଣ ପଖଜ ମାଡ଼ ।

ଏହି ସମୟରେ ଛାତ ଉପରେ କେହି ଚାଲୁଥିବାର ଶବ୍ଦ । କ୍ରମଶଃ ତାର ଗତି ବଢି ଚାଲିଛି । ଶେଷକୁ ଜଣାପଡିଲା ଯେପରି ଦୁଇଜଣ ଲୋକ ପରସ୍ପରକୁ ଗୋଡ଼ାଉଛନ୍ତି । ଲାଲାଜୀ ଓ ତାଙ୍କ ବନ୍ଧୁଙ୍କ ମୁହଁ ଶେତା ପଡିଲାଣି । ଶେଷକୁ ଆଉ ରହି ପାରିଲେ ନାହିଁ ।

ଲାଲାଜୀ– 'ବାବୁଜୀ ଉପରେ କିଏ ।'

ଦୀନ– 'ଛାଡନ୍ତୁ । ତା ସାଙ୍ଗରେ କଣ ଅଛି ? ହଇରେ ମାଧବ, ତୁ ଖଣ୍ଡେ ସୁରଦାସ ଛାଡ଼ିଲୁ ।'

ମାଧବର କଣ୍ଠ ସୁଲଳିତ ଏବଂ ସତରେ ସଙ୍ଗୀତ ଜାଣେ । ସେ ସୁରଦାସଙ୍କ ଭଜନ ଆରମ୍ଭ କଲା ।

ଉଧୋ, ମନ ନାହିଁ ଦଶ ବିଶ
ଏକ ରହୋ, ସୋ ଶ୍ୟାମ ସଙ୍ଗ ଗୟୋ, ଅବକୌନ
ଭଜେଗା ଇଶ ।'

ଗୋପଗଣ ଉଦ୍ଧବଙ୍କୁ କହୁଛନ୍ତି ଯେ, ତୁମେ ଯେଉଁ ଭାଗବତ ଭକ୍ତିର ଉପଦେଶ ଦେଲ ତା ଠିକ୍ । କିନ୍ତୁ ଆମ ପାଖରେ ତ ଗୋଟିଏ ମନ ଥିଲା ଯାହାକି ଶ୍ୟାମ ସାଙ୍ଗେ ସାଙ୍ଗେ ଯାଇଛି । ଆଉ ମନ କାହିଁ ଯେ, ଭକ୍ତି କରିବୁ ।

ଅତି ସୁମଧୁର ଏବଂ ଭାବଗର୍ଭିକ ଭଜନ । କିନ୍ତୁ ଲାଲାଜୀଙ୍କର ମଧ ଗୋପୀମାନଙ୍କ ପରି ଗୋଟିଏ ମନ । ଅବଶ୍ୟ ତା ଶ୍ୟାମ ସାଙ୍ଗେ ଯାଇନାହିଁ । ତା ଲାଖିଛି ଛାତ ଉପରେ ହେଉଥିବା ଶବ୍ଦରେ । ପୁଣି ପଚାରିଲେ, 'ବାବୁଜୀ ଉପରେ କିଏ ।'

ଦୀନ– 'କଣ ବୁଝି ପାରୁନାହାନ୍ତି ? ସେଇମାନେ ।'

ଲାଲାଜୀ – 'ଆପଣଙ୍କୁ କିଛି କରନ୍ତି ନାହିଁ ?'

ଦୀନ– 'କରିବେ କଣ ? ଆମେ ହେଲୁ ଜଗନ୍ନାଥଙ୍କ ବ୍ରାହ୍ମଣ । ଏମାନେ ଆମକୁ କଣ କରିବେ ? ଏଇ ଯାହା ତାଙ୍କ ବିଚରଣ ବେଳାରେ ଟିକିଏ ଆଓ୍ୱାଜ ହୁଏ । ଏମାନେ ଫେର ତ କେଉଁଠି ରହିବେ । ଏଠୁ ବାହାର କରିଦେଲେ ବସ୍ତିରେ ଉତ୍ପାତ କରିବେ । ଛାଡନ୍ତୁ.... ଏହି ଭଜନକୁ ମନ ଦେଇ ଶୁଣନ୍ତୁ କହି ଦୀନ ଗାଇବା ଆରମ୍ଭ କଲା । 'ଠାକୁର ତୁମ ଚନ୍ଦନ ହମ ପାନୀ' । ଲାଲାଜୀଙ୍କର ଯା ଭିତରେ ତ ଛାତି ମଧ ପାନୀ ହେଲାଣି । କହିଲେ, ବାବୁଜୀ, ଆମକୁ ଇଜାଜତ ଦିଅନ୍ତୁ, ରାତି ହେଲାଣି । ଘରକୁ ଯିବୁ ।''

ଦୀନ– 'ସେକି କଥା ? ଅତିଥି ଅଭୁକ୍ତ ଯିବେ ? ଆମକୁ ପାପ ଲାଗିବ । ଆପଣ ଭୟ କରନ୍ତୁ ନାହିଁ । ଆମେ ଆପଣଙ୍କୁ ନେଇ ଛାଡିଦେଇ ଆସିବୁ ।'

ଦୀନବନ୍ଧୁ ଖାଇବା ପରସିବାକୁ କହିଲା । ସଙ୍ଗୀତଜ୍ଞଗଣ ରୋଷେଇଘର ଆଡକୁ ଗଲେ । ଦୀନବନ୍ଧୁ ଲାଲାଜୀଙ୍କ ସହିତ ପ୍ରେତତତ୍ତ୍ୱ ବିଷୟରେ ଆଲୋଚନା ଆରମ୍ଭ କରିଦେଲା । ତାର ସାରାଂଶ ହେଲା ଯେ, ପ୍ରେତଗଣ ନିଜ ଅଧିକାର ସମ୍ବନ୍ଧରେ ଅତି ସଚେତନ । ଆମେମାନେ ମଧ୍ୟ ତାଙ୍କର ଅଧିକାର କେତେକଟା ସ୍ୱୀକାର କରି ନେଇଛୁ । ଛାତଟା ଓ ସେଥିରେ ଥିବା ଦୁଇଟା ବଖରା ତାଙ୍କର । ଏହିସବୁ କଥାବାର୍ତ୍ତା ହେଉଥିଲା ବେଳେ ଉପରେ ଖୁବ ଜୋରରେ ଲାଠି ବାଜୁଥିବାର ଶବ୍ଦ ଓ ହଠାତ୍ ବିକଟାଳ ଚେଁ ଚେଁ ଆୱାଜ । ଲାଲାଜି ବ୍ୟାକୁଳ ହୋଇ ଦୀନାକୁ କୁଣ୍ଢେଇ ପକାଇଲେ । ଦୀନା କହିଲା 'ବ୍ୟସ୍ତ ହୁଅନ୍ତୁ ନାହିଁ, ଆମର ଏଥିରେ ଡରିବାର କିଛି ନାହିଁ । ଆଜି ଏମାନଙ୍କର ଉତ୍ପାତ ଟିକିଏ ବଢ଼ିଛି । କାରଣ ସେମାନେ ଆପଣମାନଙ୍କୁ ନୂଆ ଲୋକ ଦେଖି ଏପରି ହେଉଛନ୍ତି । କିନ୍ତୁ ଆମର ପ୍ରଧାନ ତାନ୍ତ୍ରିକ ତ୍ରିପାଠୀଜି ଏସବୁ ଦେଖି ବଜ୍ରବାରାହୀ ଯୋଗିନୀଙ୍କୁ ଆହ୍ୱାନ କରିଛନ୍ତି । ଯୋଗିନୀ ସମସ୍ତଙ୍କୁ ତଡ଼ି ଦେଲାଣି । ଆପଣମାନେ ଥିଲା ପର୍ଯ୍ୟନ୍ତ ଏଠି ଯୋଗିନୀ ରହିବ ।'

ଲାଲାଜୀ ପଚାରିଲେ 'ତା ହେଲେ ଏଠି ଯୋଗିନୀକୁ ବରାବର ରଖୁ ନାହାନ୍ତି' ।

ଦୀନ – 'ନା ଲାଲାଜୀ, ଯୋଗିନୀ ସବୁବେଳେ ବିଚରଣ କରୁଥାଏ । ଠାଏ ରହେ ନାହିଁ । ତା ଛଡ଼ା ଥରେ ଡାକିଲେ ଯୋଗିନୀର ଭୋଗରେ କେତେ ଖର୍ଚ୍ଚ । ଏଇଲେ ଗୋଟେ କଳାମେଣ୍ଢା ଖାଇବ । ଏଠି ସେ ରହିଲେ ଆମେ ତାକୁ କେଉଁଠୁ ଖାଇବାକୁ ଦେବୁ ?'

ଲାଲାଜୀଙ୍କ ପକ୍ଷରେ ରୋଗ ଯାହା ଥିଲା ତା ଅପେକ୍ଷା ଔଷଧ ବେଶି ଭୟଙ୍କର । ଅତଏବ ଲାଲାଜୀଙ୍କ ପକ୍ଷରେ ସେଠି ଆଉ ଏକ ମୁହୂର୍ତ୍ତ ରହିବା ଅସମ୍ଭବ । କିଛି ତର୍କପରେ ସ୍ଥିର ହେଲା ଯେ, ପ୍ରସାଦ ଲାଲାଜୀ ସାଙ୍ଗରେ ନେଇଯିବେ । ଦୀନା ଓ ମାଧବ ଲାଲାଜୀଙ୍କୁ ତାଙ୍କ ଘରେ ଛାଡିଦେଇ ଆସିବେ । ତା ପରେ ଲାଲାଜୀ ଆଉ ସେପଟ ମାଡି ନାହାନ୍ତି ।

ଏଠି ଅବଶ୍ୟ ଉଲ୍ଲେଖଯୋଗ୍ୟ ଯେ, ହରିଜନ ବସ୍ତିରୁ ତାନ୍ତ୍ରିକ ପୂଜା ନାଁରେ ଗୋଟିଏ ଘୁଷୁରିଛୁଆ ଆମଦାନୀ ହୋଇଥିଲା । ତା ଉପରେ ଉପଯୁକ୍ତ ସମୟରେ ଠେଙ୍ଗାମାଡ଼ ଦ୍ୱାରା ଯୋଗିନୀ ଆବିର୍ଭାବ ସୂଚାରୁରୂପେ ସଂପନ୍ନ ହୋଇଥିଲା ।



# ନାୟକ ଉପାଖ୍ୟାନ

ସେତେବେଳେ ମୁଁ ବମ୍ବେରେ ଗୋଟିଏ ଅର୍ଦ୍ଧସରକାରୀ ପ୍ରତିଷ୍ଠାନରେ ଡେପ୍ୟୁଟେଶନରେ ଥିଲି । ଏବଂ ବମ୍ବେ ଭଳି ଯାଗାରେ ମଧ୍ୟ ଘର ଖଣ୍ଡେ ପାଇ ଯାଇଥିଲି । ଏଣୁ ଓଡ଼ିଶାରୁ ଯେ ଅନେକ ପରିଚିତ, ଅର୍ଦ୍ଧପରିଚିତ ଏବଂ ପ୍ରାୟ ଅପରିଚିତ ଲୋକ ଆସି ମୋର ଅତିଥି ହେବେ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଦିନେ ଏକ ଟେଲିଗ୍ରାମ ପହଞ୍ଚିଲା - "Ramesh missing, suspect gone Bombay, trace and inform Badanani" (ରମେଶ ନିରୁଦ୍ଦେଶ, ବମ୍ବେ ଯିବାର ସନ୍ଦେହ । ବାହାର କରି ଜଣାଅ- ବଡନାନୀ ।)

ରମେଶ ମୋର ଭଣଜା । ମୋର ବଡନାନୀଙ୍କ ପୁଅ । ମୋ ବଡନାନୀ ମୋଠାରୁ ପ୍ରାୟ ବାର ବର୍ଷ ବଡ ହୋଇଥିବାରୁ ସେ ସମସ୍ତ ଭାଇଭଉଣୀଙ୍କ ଉପରେ ନିରଙ୍କୁଶ ଶାସନ ଚଳାଇଥାନ୍ତି । ଏବଂ ତାଙ୍କ ସ୍ୱାମୀଙ୍କ ଅବସ୍ଥା ଆହୁରି ବେଶୀ ଦୟନୀୟ । ତାଙ୍କ ସନ୍ତାନବର୍ଗଙ୍କ ଅବସ୍ଥା ସେମାନଙ୍କର ବାପାଙ୍କ ଭଳି ନହେଲେ ମଧ୍ୟ, ସୁଖକର ବୋଲି କୁହାଯାଇ ପାରିବ ନାହିଁ । ମୋଟାମୋଟି କଥା ହେଲା ଯେ ନାନୀ ଯାହା କହିବେ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ହେବ ଏବଂ ନିଜର ମତାମତ ପ୍ରଭୃତି ମହାର୍ଘ ବିଳାସ ଆଡକୁ ଯାଇ ପାରିବ ନାହିଁ । ବଡ଼ନାନୀଙ୍କ ସାମ୍ରାଜ୍ୟରେ କିନ୍ତୁ ଜଣେ ବିଦ୍ରୋହୀ ଥିଲା । ତାଙ୍କ ମଝିଆ ପୁଅ ରମେଶ । ସପ୍ତମ ଶ୍ରେଣୀରେ ପଢୁଥିଲା ବେଳେ ଥରେ କଲିକତା ପଳାଇଥିଲା । ଅବଶ୍ୟ ତିନିଦିନ ପରେ ଚୋରାଇ ନେଇଥିବା ଟଙ୍କା ସରିଯିବାରୁ ବିନା ଟିକଟରେ ଘରକୁ ଫେରି ଆସିଥିଲା । ବର୍ତ୍ତମାନ ସମସ୍ୟା ହେଉଛି, କାହା କଥା ଶୁଣୁ ନାହିଁ । ଖାଲି ସିନେମା ଦେଖୁଛି । ଏ ବିଷୟରେ ଗତଥର ଛୁଟିରେ ନାନୀଠାରୁ ଲମ୍ବା ବକ୍ତୃତା ଶୁଣିଛି । କିନ୍ତୁ ସେ ରୋଗ ସେହି ବୟସରେ ମୋତେ ମଧ୍ୟ ହୋଇଥିବାରୁ, ଏହାକୁ ସାଧାରଣ ବୟସ ଧର୍ମ ଅର୍ଥାତ୍ ପୁଅପିଲାର ଦାଢି ଗଜେଇବା ଭଳି ପ୍ରାକୃତିକ ବ୍ୟାପାର ବୋଲି ଧରି ନେଇଥିଲି । କିନ୍ତୁ ଏ ଟେଲିଗ୍ରାମଟି ପାଇ ମୋ ମୁଣ୍ଡରେ ତେନ୍ତୁଳିଆ ବିଛା ଅବଶ୍ୟ କାମୁଡ଼ିଲା । ବମ୍ବେ ତ ସାରା ଭାରତର ନିରୁଦ୍ଦିଷ୍ଟ ଯୁବକଙ୍କ ଲକ୍ଷ୍ୟ । ଏବଂ ଏହା ତ ଭୁବନେଶ୍ୱର ବା ଆଲ୍ଲାହାବାଦ ଭଳି କାବୁରେ ଆସିବା

ସହର ନୁହେଁ । ଏଣେ ନାନୀଙ୍କ ତାର କବିବର ରାଧାନାଥଙ୍କ ଭାଷାରେ 'ପରଓ୍ୱାନା ନୁହେଁ ଓ୍ୱାରଣ୍ଟ ଅଟେ ସେ' । କିଛି ବୁଝି ପାରୁ ନାହିଁ । ବମ୍ବେରେ କଲିକତା କାଳୀମାଈଙ୍କ ଭଳି ଜର୍କେଣସି ଦେବ ଦେବୀ ଥିବା ମୋତେ ଜଣା ନଥିଲା । ଏଣୁ ଭାବିଲି ଯେ ଧର୍ମନିରପେକ୍ଷ ନୀତିରେ ହାଜୀ ଅଲ୍ଲିଙ୍କ ଦରଘାରେ ଶିରିଣୀ ମାନତ କରିବି, ମାହିମ ଗିର୍ଜାରେ ମା ମେରୀଙ୍କ ପାଖେ ମହମବତୀ ଜାଳିବି ଓ ସିଦ୍ଧି ବିନାୟକଙ୍କ ପାଖେ ନଡ଼ିଆ ଭାଙ୍ଗିବି ।

ସେ ଯାହାହେଉ, ଟେଲିଗ୍ରାମ ପାଇବାର ତୃତୀୟ ଦିନ ଶ୍ରୀମାନ ରମେଶ ମୋ ଘରେ ଆସି ପହଞ୍ଚିଲେ । କିଞ୍ଚିତ ଜେରା ପରେ ଜଣା ପଡିଲା ଯେ ବାବୁ ଏଠି ଅଭିନେତା ହେବାକୁ ଆସିଛନ୍ତି । ସବୁଠାରୁ ଆଶ୍ଚର୍ଯ୍ୟ କଥା ଯେ ତାକୁ ଏକ ନାମଯାଦା ପ୍ରତିଷ୍ଠାନ ସ୍କ୍ରିନ ଟେଷ୍ଟ ଲାଗି ଡ଼ାକିଛି । ଅତି ଆଶ୍ଚର୍ଯ୍ୟ କଥା । ତେବେ ଜଣା ପଡ଼ିଲା ଯେ ସେ ଭଲ କ୍ରିକେଟ ଖେଳୁଥିବାରୁ ଜଣେ ନେତାଙ୍କ ନେକ୍ ନଜରରେ ପଡ଼ିଗଲା । ସେ ତାଙ୍କର ପରିଚିତ ଏକ ପ୍ରୋଡ୍ୟୁସରକୁ ଚିଠି ଲେଖିଥିଲେ । ଅତଏବ ରମେଶ ଆଉ ଦଶଟା 'ଚଲା ମୁରାରୀ ହିରୋ ବନନେ' ପରି ନୁହେଁ । ତାର ଚଳଚ୍ଚିତ୍ର ଜଗତକୁ ଢୁକିଯିବାର ସମ୍ଭାବନା ଯଥେଷ୍ଟ ଏବଂ ଏହି ସମ୍ଭାବନା ହିଁ ମୋର ହୃତକମ୍ପ ଜାତ କଲା । କାରଣ ଚଳଚ୍ଚିତ୍ର ଜଗତକୁ ନାନୀ ସର୍ବାନ୍ତକରଣରେ ଘୃଣା କରନ୍ତି । ଏହା ଯେ କୁମ୍ଭିପାକ ନର୍କ, ଏ ବିଷୟରେ ସନ୍ଦେହ ନାହିଁ । ସେଥିରେ ଯଦି ତାଙ୍କ ନିଜ ରକ୍ତମାଂସର ସନ୍ତାନ ଏହି ନର୍କକୁଣ୍ଡକୁ ଲମ୍ଫ ପ୍ରଦାନ କରେ ତା ହେଲେ ସେ ଏ ଦେହ କିପରି ଧରିବେ ? ଏବଂ ଗଜମୂର୍ଖ ନରି (ଅର୍ଥାତ ଅଧମ) ଯଦି ତା ଭଣଜାକୁ ଏଥିରୁ ନିବୃତ୍ତ କରି ନପାରେ ସେଇଟା କି ଭାଇ । ଅର୍ଥାତ ରମେଶ କୁମାର ଯଦି ରୂପେଲି ପର୍ଦ୍ଦାରେ ଦେଖାଯାନ୍ତି ତାହେଲେ ମୋର ଓଡ଼ିଶା ଫେରିବାର ତ ପ୍ରଶ୍ନ ନାହିଁ । ହୁଏତ ନାଗା ସନ୍ନ୍ୟାସୀଙ୍କ ଆଖଡ଼ାରେ ଆତ୍ମଗୋପନ କରିବାକୁ ହେବ । ଯାହାହେଉ ରମେଶର ଖାଇବାର ବ୍ୟବସ୍ଥା କରି ତାକୁ ବିଶ୍ରାମ ନେବାକୁ କହି ଅଫିସ ବାହାରିଲି ।

ବମ୍ବେ ସହରରେ ଏକ ପ୍ରତିଷ୍ଠାନ ଅଛି ଯାହାକୁ ପଠନ ବା ଖାନ କହନ୍ତି । ଏମାନେ କେବେ ଆଫଗାନିସ୍ଥାନ ବା ପାକିସ୍ଥାନର ଉତ୍ତର ପଶ୍ଚିମ ସୀମାନ୍ତରୁ ଆସିଥିଲେ । ତେବେ ଏମାନେ ବର୍ତ୍ତମାନ ବମ୍ବେର ସ୍ଥାୟୀ ବାସିନ୍ଦା । ପହରାଦାର କାମଟା ପ୍ରାୟ ଏମାନଙ୍କର ଏକଚାଟିଆ । ତା ଛଡ଼ା ବହୁବିଦ୍ୟାରେ ଦକ୍ଷ । ଯଥା ଉପଯୁକ୍ତ ଦକ୍ଷିଣା ପାଉଥିଲେ ଯେତେ ଭିଡ଼ ଥିଲେ ମଧ ଆପଣଙ୍କ ଗାଡ଼ି ଖୁବ୍ ସୁବିଧାରେ ପାର୍କ କରି ହେବ । ଟେପ ରେକର୍ଡ଼ର ଠାରୁ କେମି ସାବୁନ ପର୍ଯ୍ୟନ୍ତ ଜାହାଜରୁ ମିଳିଯିବ....ଇତ୍ୟାଦି ଇତ୍ୟାଦି । ଏହା ଅବଶ୍ୟ ମନମୋହନ ସିଂହଙ୍କ ଆଗର ଅବସ୍ଥା । ସବୁ ଷ୍ଟୁଡ଼ିଓ ମାନଙ୍କରେ ଏହିମାନେ ହିଁ ପହରାଦାର । ଅତଏବ ଆମ ଅଫିସର ଖାନ୍‌କୁ ଡାକି ପଠାଇଲି । ତାର ପୂରା ନାମ ଅବଦୁଲ୍ ମଜିଦ ଖାଁ ଖଟକ୍ । କିନ୍ତୁ ସମସ୍ତେ ତାକୁ ଖଟକ୍ ଖାନ ବୋଲି ଡାକନ୍ତି । ତାକୁ ସମସ୍ତ ବୃତାନ୍ତ ବୁଝାଇ

କହିଲି । ଖଟକ୍ ଖାଁ କହିଲେ ଯେ ତାଙ୍କର ମାମୁଁ ପୁଅ ଭାଇ ଉକ୍ତ ଷ୍ଟୁଡିଓରେ କେଆରଟେକର କାମ କରେ । ତା ଦେଇ ସେ କିଛି ଖବରାଖବର ସଂଗ୍ରହ କରିବ । ଫିଲିମ୍ ଲାଇନ ଯେ ଭଲ ଯାଗା ନୁହେଁ ଏବଂ ଏଥିରୁ ସାହେବଙ୍କ ଭାନଜାଙ୍କୁ (ଭଣଜାକୁ) ବାହାର କରି ନେବା ନିଶ୍ଚୟ ନେକ୍ କିର୍‌ଦାର (ପୁଣ୍ୟ କର୍ମ) ସାଥିରେ ଉପଦେଶ ଦେଲେ ଯେ ହାଜୀ ମଲଙ୍ଗ ପୀରଙ୍କୁ ମାନତ କରନ୍ତୁ । ମୁଁ ମଧ୍ୟ ସର୍ବାନ୍ତକରଣରେ ସମର୍ଥନ କଲି । କାରଣ ମୁଁ ସମସ୍ତ ଆଧିଦୈବିକ, ଓ ଆଧିଭୌତିକ ଶକ୍ତିକୁ ପୂଜା କରିବାକୁ ପ୍ରସ୍ତୁତ ଯଦି ମୁଁ ଶାନ୍ତିରେ ରହି ପାରିଲି । ଏଥିଲାଗି ମୁଁ ହିନ୍ଦୁ ବୌଦ୍ଧ ଶିଖ ଜୈନ ପାରସିକ ମୁସଲମାନ ଖ୍ରୀଷ୍ଟାନୀ, ସମସ୍ତଙ୍କୁ ମାନିବାକୁ ରାଜି ।

ଏହାପରେ କେତେଦିନ ମୁଁ ଅତ୍ୟନ୍ତ ବ୍ୟସ୍ତ ରହିଲି । ମୁଁ କେତେବେଳେ ଘରକୁ ଫେରୁଥିଲି, କେତେବେଳେ ବା ଅଫିସରେ ହିଁ ରାତି କଟାଇ ଦେଉଥିଲି । ମଝିରେ ଟିକିଏ ଦୁବାଇ ମଧ୍ୟ ଯିବାକୁ ପଡିଲା । ଏଣୁ ରମେଶ ସହିତ ପ୍ରାୟ ଦେଖା ହେଉ ନଥିଲା । ମୁଁ ଘରେ ପହଞ୍ଚିଲା ବେଳକୁ ହୁଏତ ସେ ଶୋଇଥାଏ ବା କୁଆଡେ ଯାଇଥାଏ । ହଠାତ୍ ଦିନେ ରମେଶ ପ୍ରାୟ ଏଗାରଟା ବେଳେ ଅଫିସରେ ହାଜର । ଏ କାନରୁ ସେ କାନ ପର୍ଯ୍ୟନ୍ତ ବିସ୍ତାରିତ ଏକ ହସ ମୁହଁରେ ଲାଖିଛି । କହିଲା, 'ମାମୁଁ, ଆଜି ସନ୍ଧ୍ୟାବେଳେ ଷ୍ଟୁଡ଼ିଓ ଆସ । ଆଜି ମୋର ଶୁଟିଂ ହେଉଛି' । ଏହା ଶୁଣି ତ ମୋତେ ଏଗାର କିଲୋଭୋଲ୍ଟ ଶକ୍ ଲାଗିଗଲା । ତାମାନେ ବ୍ୟାପାର ଅନେକ ଆଗେଇ ଗଲାଣି । ରମେଶକୁ ଆଇସ୍‌କ୍ରିମ ଖୁଆଇ ବିଦା କରି ଖଟକ ଖାନ୍‌କୁ ଡାକି ପଠାଇଲି । ଖାନ୍ ଆସିଲା ପରେ ତାଙ୍କୁ ମୋର ସାମୁହିକ ବିପଦ କଥା ବୁଝାଇଲି । କିନ୍ତୁ ଖାନ୍ ଅବିଚଳିତ । କେବଳ ମୃଦୁହାସ୍ୟ କରି କହିଲେ, 'ଇନ୍‌ଶା ଆଲ୍ଲା, ସବ୍ ଠିକ ହୋଯାଏଗା । ଲାହୌଲ ବିଲାକୁବତ୍ । ଦୁଶମନ ପଶେମାନ୍' । ଖାନ କ'ଣ କହିଲା ସେ ବୁଝେ । ତେବେ ମୋତେ ଭରସା ଦେଲା ଏବଂ କହିଲା ଯେ ମୋର ଶୁଟିଂ ଦେଖିବା ଉଚିତ ଆଉ ଏତେ ଦିନ ବମ୍ବେରେ ରହି ଶୁଟିଂ ଦେଖିନି, ଏ କଥା ଶୁଣିଲେ ଲୋକେ ଅବଶ୍ୟ ହସିବେ । ଏଣୁ ଏ ଅଭିଜ୍ଞତାର ଅଭାବ କାଳବିଳମ୍ବ ନକରି ଅଚିରେ ଦୂର କରିବାକୁ ହେବ ।

ସେଦିନ ସନ୍ଧ୍ୟାବେଳେ ପ୍ରାୟ ସାଢେ ଆଠଟା ସମୟକୁ ହମରାଜ ଷ୍ଟୁଡ଼ିଓକୁ ବାହାରିଲି । ଏହାର ମାଲିକ ପେଷ୍ଟନଜୀ ଭୁସାଓ୍ୟାଲା । ବହୁ ଫିଲ୍ମ ତିଆରି କରିଛନ୍ତି । ତାଙ୍କ ଫିଲ୍ମ ଅର୍ନ୍ତରାଷ୍ଟ୍ରୀୟ ପ୍ରଦର୍ଶନୀରେ ସତ୍ୟଜିତ ରାୟ ବା ଶ୍ୟାମ ବେନେଗଲଙ୍କ ସାଙ୍ଗେ ସ୍ପର୍ଦ୍ଧା କରେ ନାହିଁ । କିନ୍ତୁ ପଇସା ଉପାର୍ଜନ କରେ ଖୁବ । ପହଞ୍ଚିଲା ବେଳକୁ ପ୍ରାୟ ସାଢେ ନଟା ହୋଇ ସାରିଲାଣି । ମୁଁ ଅନ୍ଧାରକୁ କୋଣ ଦେଖି ଗୋଟେ ଫୋଲ୍ଡିଂ ଚଉକି ଧରି ବସି ପଡିଲି । ସେ ସମୟରେ ଲାଇଟ ବୋଲା ଓ ଫଟୋଗ୍ରାଫର ମଧ୍ୟରେ ଭୀଷଣ ବଚସା । କିଛି ସମୟ ପରେ ଶୁଟିଂ ଆରମ୍ଭ ହେଲା । ହିରୋ ଓ ହିରୋଇନ ପ୍ରଚୁର ଡିଆଁ ଡେଇଁ ଆରମ୍ଭ କଲେ । ପଛରୁ

ଗୀତ ହେଲା "ଓ ଜାନେମନ୍ ଓ ଦିଲ୍‌ରୁବା, ହୌଲେ ସେ ଚଲେ ଥଣ୍ଡି ହୱା" ।

ସେ ଦୃଶ୍ୟର ଶୁଟିଂ ସରିଲା । କିଛି ସମୟ ବିରତି ପରେ ପୁଣି ଥରେ ଶୁଟିଂ ଆରମ୍ଭ ହେଲା । ଏଥର ଶ୍ରୀମାନ ରମେଶକୁମାର ବାହାରିଲେ । ପରିଧାନ କ୍ରିକେଟ ପୋଷାକ । ଆଉ ଜଣେ ଝିଅ ଯେ କି ଦୁଇ ନମ୍ବର ହିରୋଇନ ପରି ଜଣାପଡୁଛି ଆସି ବିଚିତ୍ର ଭଙ୍ଗୀରେ ଠିଆ ହେଲା । ଶ୍ରୀମାନ ରମେଶ ତାକୁ ବ୍ୟାଟ ଧରି କ୍ରିଜରେ କିପରି ଛିଡ଼ା ହେବାକୁ ହୁଏ ତା ଶିଖାଉଛନ୍ତି । ଏ ସମୟରେ କିଛି ମନୋମୁଗ୍ଧକର ସଂଳାପ ହେବା କଥା । ଥର ଥର କରି ରମେଶ ଦେଖାଉଛି । କିନ୍ତୁ ହେଉନି । ଏଥର ରମେଶ ସେ ଝିଅପାଖକୁ ଯାଇ ତା ହାତ ଧରି ପୋଜିସନ ଠିକ୍ କରିବାକୁ ବାହାରିଲା ଯେପରି ପ୍ରଥମ ପ୍ରଥମ ପ୍ରାକ୍ଟିସ୍‌କୁ ଆସିଥିବା ପିଲାମାନଙ୍କୁ ସେ ଶିଖାଉଛି । ଏ ସମୟରେ ବିନାମେଘେ ବଜ୍ରପାତ ।

ଜଣେ ବେଶ ମୋଟାମୋଟି ଭଦ୍ରମହିଳା ହଠାତ୍ ଶୁଟିଂ ସ୍ଥାନ ଆଡକୁ ଧାଇଁ ଆସିଲେ । ଜଣା ପଡୁଥିଲା ଯେପରି ଅରଣା ମଇଁଷି ମାରିବାକୁ ଛୁଟିଆସୁଛି । ଝପଟିଯାଇ ରମେଶର କଲାର ଧରି ଟାଣି ଆଣି ପାଟି କଲେ, 'ଏ ଛୋକରା କ୍ୟା ଇଫଡ୍ଡା କରତା ହୈ । ହାମାରା ବେଟିକେ ସାଥ ଐସା ବଦମାଶି କରେଗା ତୋ ଚମଡ଼ି ଉତାର ଦେଙ୍ଗା ।' ମୋ ପାଖରେ ବସିଥିବା ଜଣେ ଭଦ୍ରଲୋକ କହିଲେ 'ଜୟ ବଜରଙ୍ଗ ବଲୀ । କାମ ଖଲାସ୍' । ମୁଁ ତାଙ୍କଠାରୁ ବୁଝିଲି ଯେ ଏ ମହିଳା ହେଉଛନ୍ତି ଭାମିନୀ ଦେବୀ । ଦୁଇ ନମ୍ବର ହିରୋଇନ ଅର୍ଥାତ ଅପରୂପା ଦେବୀଙ୍କ ମା ଏବଂ ଡ଼ିକ୍ଟେଟର । ସେ ତାଙ୍କ ଝିଅର ଟଙ୍କାର ଓ ଚରିତ୍ରର ଏକମାତ୍ର ରକ୍ଷାକର୍ତ୍ତା । ତାଙ୍କ ବ୍ୟବହାର ଲାଗି କେତେକ ଫିଲ୍ମ ଆର୍ଟିଷ୍ଟ ତାଙ୍କୁ ଗୁଣ୍ଡା ଆକ୍ଟରେ ଗିରଫ କରିବା ଲାଗି ପୁଲିସ କମିଶନରଙ୍କୁ ଦରଖାସ୍ତ ଦେଇଥିଲେ । କିନ୍ତୁ ଅପରୂପାଙ୍କ ଫିଲ୍ମ ହିଟ୍ ହେଉଥିବାରୁ ପ୍ରୋଡ୍ୟୁସର ଡାଇରେକ୍ଟର ମାନେ ତାଙ୍କ ମନ ଧରି ରହୁଛନ୍ତି ।

ବୁଝିଗଲି ଯେ ଭବିଷ୍ୟତ କଥୋପକଥନ ଆଉ ଶ୍ରୀମାନ ରମେଶଙ୍କ ପକ୍ଷରେ ସୁଖକର ହେବନାହିଁ । ଏଣୁ ସେଠୁଁ ବାଟ କାଟିଲି । ସେଠୁ ଲାଇଟ୍ ଅଫ ଏସିଆ ଇରାନୀ ହୋଟେଲରେ ତୃପ୍ତିକର ଆହାରାଦି ସାରି ଘରକୁ ଫେରିଲି । ଶୁଣିଲି ରମେଶ ଶୋଇ ପଡିଲାଣି । ତା ଆରଦିନ ସେ ବ୍ରେକଫାଷ୍ଟ ଲାଗି ମୋ ଲାଗି ଅପେକ୍ଷା କରିଛି । ମୁଁ କିଛି ନ ଜାଣିଲା ପରି ପଚାରିଲି, 'କିରେ, ତୋର ରୂପେଲି ପର୍ଦ୍ଦାରେ ଆତ୍ମପ୍ରକାଶ କଣ ହେଲା ?'

ରମେଶ ଦି ଚାରିଥର ଛେପ ଢୋକି କହିଲା, 'ମାମୁଁ, ମାଙ୍କ ଠାରୁ ଚିଠି ପାଇଥିଲି । ଏବେ ଭାବୁଛି, ମା'ଙ୍କ, ବାପାଙ୍କ ମନରେ କଷ୍ଟ ଦେଇ କଣ ଏହି ଲାଇନକୁ ଯିବା ଉଚିତ ? କେତେ ଜଣ ବା ଏଠି ଉଠି ପାରୁଛନ୍ତି । ଏତେଦିନ ବୁଲାବୁଲି କରି ଦେଖିଲି, ନୂଆ ଅଭିନେତାର ଉଠିବା ସହଜ ନୁହେଁ । ତାପରେ ମୁଁ ତ ଫିଲ୍ମ୍ ଇନଷ୍ଟିଟିଉଟରେ ନୁହେଁ । ସେମାନେ ଗୋଟେ ଦଳ ହୋଇଛନ୍ତି । ସହଜେ ଆଉ କାହାକୁ ପୂରାଇ ଦିଅନ୍ତିନି । ତୁମର ମତ କଣ ?'

ମୁଁ ମୁହଁଟାକୁ ଯଥା ସମ୍ଭବ ଗମ୍ଭୀର ଓ ସହାନୁଭୂତିପୂର୍ଣ୍ଣ କରି କହିଲି, 'ଯଦିଚ ମୁଁ ଖୁବ୍ ଆଶା କରିଥିଲି ଯେ ତୁ ଏ ଲାଇନରେ ଉତୁରିଯିବୁ, ତେବେ ମଧ ସ୍ଥିର ବୁଦ୍ଧିରେ ବିଚାର କଲେ ତୁ ଯାହା ଭାବୁଛୁ ଠିକ୍ । ତୁ ଖେଳୁ ଚମତ୍କାର । ପଢୁ ମଧ ଭଲ । ତୁ ଆଉ ଏ ଏସ୍ ପାଆ ବା ନପାଆ ଭଲ କମ୍ପାନୀରେ ଏକ୍‌ଜିକ୍ୟୁଟିଭ ଟ୍ରେନି ତ ହୋଇପାରିବୁ । ନାଁ କରିବାର ଯଦି କଥା, ତା ହେଲେ ନାଁ ସବୁଠାରୁ ବେଶି କ୍ରିକେଟରେ । ତୁ ଯା, ପଢାପଢି ଓ କ୍ରିକେଟ ଦେଖ । ଏଥର ତୋର ବିଶ୍ୱବିଦ୍ୟାଳୟ ଏକାଦଶରେ ତ ଚାନ୍ସ ନିଶ୍ଚୟ । ଯେ ସବୁ ଆକାଶ କଇଁଆ, ଚିଲିକା ମାଡ଼ ଛାଡ଼' । ରମେଶ କହିଲା, 'ତମେ ଠିକ କହୁଛ ମାମୁଁ, ମୀନାର ଏକ୍ସପ୍ରେସରେ ଗୋଟେ ଟିକେଟ କରାଇ ଦିଅତନି ?'

ମୁଁ ତାକୁ ସେ ବିଷୟରେ ବିହିତ କାର୍ଯ୍ୟାନୁଷ୍ଠାନ କରିବାର କଥା ଦେଇ ଅଫିସ ବାହାରିଲି ।

ଅଫିସରେ ପହଞ୍ଚି ଖଟକେ ଖାନ୍‌କୁ ତଲବ କଲି । ଆସିଲା କ୍ଷଣି ପଚାରିଲି, 'ଖାନ୍, ବଞ୍ଚିଗଲି । କିନ୍ତୁ ଏ ଯାଦୁ ହେଲା କିପରି ?'

ଖାନ୍— 'ସବୁ ଆଲ୍ଲାର ମରଜି, ଆପଣଙ୍କର ତିନିଶହ ଟଙ୍କା ଖରଚ ହେଲା ।'

ମୁ— 'ମାନେ, ବୁଝାଇ କହ ।'

ଖାନ୍— 'ଆଲ୍ଲାର ମରଜି ଭି ଆଜିକାଲି ଟଙ୍କାର ଚକରେ ଚାଲେ । ମୋର ବିରାଦର ଆମାନୁଲ୍ଲା ଖାଁ ବାନ୍ଦ୍ରାର ବେଲେଭ୍ୟୁ ହାଉସିଂ ଏଷ୍ଟେଟରେ କାମ କରେ । ସେଠି ଅପରୂପା ଓ ତା ମା ଥାଆନ୍ତି । ତାକୁ ମୁଁ ଆପଣଙ୍କ ସମସ୍ୟା କହିଥିଲି । ସେ ଅପରୂପାର ମା'କୁ କଣ କହିଥିବ । ଯାହା ହେଉ, କାମ ତ ହେଲା ।'

ମୋଠାରୁ ଏ ବାବଦକୁ ଓ ରମେଶର ଟିକଟ ବାବଦକୁ ପଇସା ନେଲା ପରେ ଖାନ୍ ସାହେବ କହିଲା, 'ରବିବାର ଦିନ ମୁଁ ଆପଣଙ୍କ ଘରକୁ ଆସିବି ।ସେଠୁ ହାଜି ମଲଙ୍ଗ ଦରଘା ଯିବା । କାମ ହେଲା ପରେ ଏଇଟା ଆମର ଫର୍ଜ (କର୍ତ୍ତବ୍ୟ) ।' ମୁଁ କହିଲି, 'ଅବଶ୍ୟ, ଅବଶ୍ୟ ।' ମନେ ମନେ କହିଲି 'ଯିଶୁ କଣ ମିଛରେ କହିଛନ୍ତି Give unto Ceaser what is Ceaser's and give unto God what is God's.'



# କ୍ଷତି ଓ ପୂର୍ତ୍ତି

ଶ୍ରୀମତୀ ଗୀତିକା ମିଶ୍ର ଜଣେ ସିନିଅର ଅଧ୍ୟାପିକା । ବୟସ ପ୍ରାୟ ପଇଁଚାଳିଶ ଉପରେ । ସ୍ୱାମୀ ମଧ୍ୟ ଉଚ୍ଚ ଅଫିସର । ପିଲା ଦିଓଟି ହଷ୍ଟେଲରେ ରହି ପଢନ୍ତି । ସେ ୟୁଜିସି କାମରେ ଦିଲ୍ଲୀ ଯାଉଛନ୍ତି । ଗତ ରାତିରେ କଲିକତା ଆସିଥିଲେ । ବର୍ତ୍ତମାନ ସଂଧ୍ୟାବେଳେ ଏଆରବସ ଫ୍ଲାଇଟ୍‌ରେ ଦିଲ୍ଲୀ ଯାଉଛନ୍ତି । ଉଡ଼ାଜାହାଜର ଦୁଆର ବନ୍ଦ ହୋଇ ସାରିଲାଣି । ଗୀତିକା ଦେବୀ ସିଟବେଲ୍ଟ ବାନ୍ଧି ଟିକିଏ ଟାଣି ହୋଇ ବସିଛନ୍ତି । ଆଜି ପର୍ଯ୍ୟନ୍ତ ଉଡ଼ାଜାହାଜର ପ୍ରଥମ ଉଠିବା ସମୟଟା ସହିତ ଅଭ୍ୟସ୍ତ ହୋଇପାରିନାହାନ୍ତି । ପେଟଟାକୁ କିମିତି ଚିପି ପକାଇଲା ଭଳି ଲାଗେ । ଏଆରହୋଷ୍ଟେସ୍‌ମାନେ ଏହି ସମୟରେ ଉଡ଼ାଜାହାଜ ଭିତରେ ବାୟୁଚାପ କମିଗଲା ଅବସ୍ଥାରେ ଅକ୍ସିଜେନ ମାସ୍କର ବ୍ୟବହାର ବିଧି ପ୍ରଦର୍ଶନ କରିଥାନ୍ତି । ଅନ୍ୟ କେହି ଦେଖନ୍ତୁ ନ ଦେଖନ୍ତୁ, ଗୀତିକା ଦେବୀ ଏହାକୁ ଖୁବ୍ ଭଲ କରି ଦେଖନ୍ତି । କାରଣ ସେହି ସମୟରେ ତାହା ତାଙ୍କ ମନ ପରିବର୍ତ୍ତନ ଟିକିଏ କରିଦିଏ । ଏଆରହୋଷ୍ଟେସ୍ ମୁହଁକୁ ଚାହିଁଛନ୍ତି । କିପରି ଚିହ୍ନା ଚିହ୍ନା ଲାଗୁଛି । ବହୁତ ମନେ ପକେଇବାର ଚେଷ୍ଟା କଲେ । କିଛି ମନେ ପଡିଲାନି । ଯା ଭିତରେ ଉଡ଼ାଜାହାଜ ଯଥେଷ୍ଟ ଉପରକୁ ଗଲାଣି । ସିଟବେଲ୍ଟ ଖୋଲିବାର ସଙ୍କେତ ଦିଆଯାଇସାରିଲାଣି । ଏଥର ଖାଇବା ବାଢିବାର ସମୟ । ଗୀତିକା ଦେବୀଙ୍କୁ ଭାରି ଶୋଷ ହେଉଛି । ଘଣ୍ଟି ବଜାଇଲେ । ଏଆରହୋଷ୍ଟେସ ଆସିଲେ ପାଣି ମାଗିବେ ।

ଗୋଟିଏ ଡ଼େଙ୍ଗା ଝିଅ ଆସିଲା । ସେହି ପରିଚିତ, ପରିଚିତ ମୁହଁ । ଝିଅଟି ମଧ୍ୟ ତାଙ୍କୁ ଲକ୍ଷ୍ୟ କରି ଚାହିଁଲା । ତାକୁ ପାଣି ଆଣିବାକୁ କହି ପୁଣି ମନେ ପକାଇବାକୁ ଚେଷ୍ଟା କଲେ । ଝିଅଟି ପାଣି ଆଣି ପଚାରିଲା 'ଆପଣ କଣ କେବେ ହମୀରପୁରରେ ଥିଲେ ?' ହଠାତ୍ ପର୍ଦ୍ଦା ଘୁଞ୍ଚିଗଲା । ଗୀତିକା ଦେବୀ ପଚାରିଲେ 'ତୁମେ ଅବନ୍ତୀକା ?' ଝିଅଟି କହିଲା, 'ହଁ ଆଣ୍ଟି । ମୁଁ ଟିକେ କାମ ସାରିଦେଇ ଆସେ । କଥା ହେବା ।'

ଗୀତିକା ଦେବୀ ଭାବିବାକୁ ଲାଗିଲେ ଅବନ୍ତୀକା ଏଆରହୋଷ୍ଟେସ ବୋଲି ସେ

ଜାଣିଥିଲେ । କିନ୍ତୁ ଏପରି ହଠାତ୍ ଦେଖା ହେବ ବୋଲି କିଏ ଜାଣିଥିଲା ? କେତେଦିନର କଥା । ହମୀରପୁର ଛାଡ଼ିବାର ଦଶବର୍ଷ ହେଲାଣି । ସେତେବେଳେ ତାଙ୍କ ସ୍ୱାମୀ ସେଠା ଏଆର ପୋର୍ଟର ଏକଜିକ୍ୟୁଟିଭ ଇଂଜିନିୟର ଥିଲେ । ଗୀତିକା ସେଠା କଲେଜରେ କାମ କରୁଥିଲେ । ତାଙ୍କ ଘରକୁ ଲାଗିଥିବା କ୍ୱାଟରରେ ଜଣେ ପାଇଲଟ ରହୁଥିଲେ । କଣ ନାଁଟି ? ହଁ ମନେ ପଡିଲା । ବଙ୍ଗାଳୀ ନାମ ପ୍ରଶାନ୍ତ ଦସ୍ତିଦାର । ତାଙ୍କ ସ୍ତ୍ରୀ ଅବନ୍ତୀକା । ସେତେବେଳେ ନୂଆ ବାହା ହୋଇଥିଲେ । ଦୁହିଁଙ୍କୁ ଦେଖିଲେ ମନ ପୂରିଉଠୁଥିଲା । ସେମାନେ ଯେ ପରସ୍ପରକୁ ଭଲ ପାଆନ୍ତି ତା ବିଷୟରେ କାହାର ସନ୍ଦେହ ହୋଇ ପାରିବ ନାହିଁ । ସେମାନଙ୍କ ସାନ୍ନିଧ ଏପରି ଏକ ଉତ୍ତାପ ସୃଷ୍ଟି କରୁଥିଲା, ଯାହା ଅନ୍ୟର ଶୀତଳତାକୁ ମଧ ତରଳାଇ ଦେଉଥିଲା । ତାଙ୍କୁ ଦେଖି ଗୀତିକାଙ୍କ ମନ ଦଳି ହୋଇ ଯାଉଥିଲା । କାରଣ ତାଙ୍କ ଜୀବନରେ ସ୍ୱାମୀଙ୍କ ସହିତ ଘନିଷ୍ଠତା ହୋଇପାରି ନଥିଲା । ସଂସାରର ଗାଡ଼ି ଗତାନୁଗତିକ ଭାବେ ଚାଲିଥିଲା । ଅଟକୁ ନଥିଲା । ସନ୍ତାନ ଦିଓଟି ମଧ ହେଇଥିଲେ । କିନ୍ତୁ ପରସ୍ପର ମଧରେ ଥିବା କାନ୍ଥ ଭାଙ୍ଗୁ ନଥିଲା । ଏହାର କୌଣସି ସ୍ପଷ୍ଟ କାରଣ ମଧ ନଥିଲା । ଅସଲ କଥା ତାଙ୍କ ସ୍ୱାମୀ ସ୍ତ୍ରୀର ମନ ସମ୍ବନ୍ଧରେ ଆଦୌ ସଚେତନ ନଥିଲେ । ସ୍ତ୍ରୀ ସହିତ ସମ୍ପର୍କକୁ ସେ ଆଉ ଅନେକ ସମ୍ପର୍କ ଭଳି ଦାୟିତ୍ୱ ଓ ଅଧିକାରର ଏକ ସମାବେଶ ବୋଲି ମନେ କରୁଥିଲେ । ମନ, ଭାବନା ଇତ୍ୟାଦିକୁ ବୋଧହୁଏ ସେ ଭାବୁଥିଲେ ଅନାବଶ୍ୟକ ବିଳାସିତା । ଏହା ପ୍ରତି ଗୀତିକାଙ୍କ ମନ ବିଦ୍ରୋହ କରିଥିଲା । କିନ୍ତୁ ତାର ଫଳ କୌଣସି ଆଗ୍ନେୟଗିରିର ବିସ୍ଫୋରଣ ନ ହୋଇ ପରିଣତ ହେଲା ତୁଷାରକ୍ଷେତ୍ରର ଶୀତଳତାରେ । ଗୀତିକା ନିଜର ଅହଂପ୍ରତି ବେଶି ସଚେତନ ହୋଇ ଉଠିଲେ । ଚାକିରୀ କରିବାର ଦରକାର ନଥିଲେ ମଧ ଚାକିରୀରେ ରହିଲେ । ଚାକିରୀର ଦାୟିତ୍ୱ ଓ ସଂସାରର ଦାୟିତ୍ୱ ମଧରେ ନିଜକୁ ବୁଡ଼ାଇଦେଲେ । ତାଙ୍କ ସ୍ୱାମୀଙ୍କର ଯଦି ତାଙ୍କ ଲାଗି ସମୟ ନାହିଁ, ତାହେଲେ ତାଙ୍କର ମଧ ତାଙ୍କ ସ୍ୱାମୀଙ୍କ ପାଇଁ ସମୟ ନାହିଁ ।

ଏ ସମୟରେ ଅବନ୍ତୀକା ଖାଇବା ଟ୍ରଲି ଧରି ପହଞ୍ଚିଲା । ପଚାରିଲା 'ମାଉସି, ଚିକେନ ଖାଆନ୍ତି ତ ?' ସ୍ୱଳ୍ପାହାରର ଟ୍ରେଟି ସାମନାରେ ରଖିଦେଲା । ତନ୍ଦୁରି ଚିକେନ, ସାଣ୍ଡଉଇଚ ଓ ସନ୍ଦେସ । ଅବନ୍ତୀକା କହିଲା, 'ଖାଇ ଦିଅନ୍ତୁ । ଏକାଠି କଫି ଖାଇବା' ସେହି ବ୍ୟବହାର । ସେହି ନମ୍ର ଅଭିଜାତ୍ୟ, କିନ୍ତୁ କାହିଁକି ଟିକିଏ ମନମରା ମନମରା ଦିଶୁଛି । ଭଗବାନ ନକରନ୍ତୁ । ମନ ବଡ଼ ଗୋଳମାଳିଆ ଜିନିଷ । ଟିକିକରେ ଫାଟିଯାଏ । ଏତେ ବର୍ଷ ଧରି ତ ନିଜେ ଏହି ବୋଝ ବୋହି ଆସିଛନ୍ତି । କଥାରେ କହନ୍ତି ବନ ପୋଡ଼ିଲେ ସମସ୍ତେ ଜାଣନ୍ତି । କିନ୍ତୁ ମନ ପୋଡ଼ିଲେ କିଏ ଜାଣେ । ଏବଂ ସେ ପୋଡିବାଟା ତ ତାଙ୍କ ମନର ବରଫକୁ ତରଳାଇ ପାରିନାହିଁ । ହୁଏତ ଆହୁରି କଠିଣ କରି ଦେଇଛି ।

ଅବନ୍ତିକା ଆସିଲା । କହିଲା ମାଉସି ଆସନ୍ତୁ, ଏକଜିକ୍ୟୁଟିଭ କ୍ଲାସରେ ବହୁତ ସିଟ ଖାଲି । ସେଠି ଏକୁଟିଆ କଥା ହେବା । ମୁଁ କ୍ୟାପ୍ଟେନଙ୍କୁ କହିଦେଇ ଆସିଛି । ଗୀତିକା ଦେବୀ ଏଆରହୋଷ୍ଟେସ ପଛେ ପଛେ ଉଡ଼ାଜାହାଜର ଆଗ ପଟକୁ ଗଲେ ଏବଂ ଏକଦମ ଆଗରେ ଏକଜିକ୍ୟୁଟିଭ୍ କ୍ଲାସରେ ଦୁଇଟି ଲାଗି ଲାଗି ଥିବା ସିଟରୁ ଗୋଟିକରେ ବସିଲେ । କିଛି ସମୟ ପରେ ଅବନ୍ତୀକା କଫି ଓ ଆଉ କିଛି ଜଳଖିଆ ନେଇ ପହଞ୍ଚିଲା ଓ ପାଖରେ ବସି କହିଲା, 'ମାଉସି, ଏଥର କୁହନ୍ତୁ । ଏବେ କେଉଁଠି । ରାକେଶ କେତେ ବଡ଼ ହେଲାଣି । ଏଇଲେ ଏକୁଟିଆ କୁଆଡେ ଯାଉଛନ୍ତି' ଏହିପରି ଅନେକ ପ୍ରଶ୍ନ ।

ଏସବୁର ଉତ୍ତର ଦେଇ ସାରିବା ପରେ ଗୀତିକା ଦେବୀ କହିଲେ ମୋ କଥାଟି ସରିଲା, ଫୁଲଗଛଟି ମରିଲା । ଏଥର ତୋ କଥା କହ । ପ୍ରଶାନ୍ତ କେଉଁଠି ?

ଅବନ୍ତିକା ହଠାତ୍ ତାଙ୍କ ହାତଟାକୁ ମୁଠାଇ ଧରିଲା । ଗୀତିକା ଦେଖିଲେ ଯେ ତା ମୁହଁଟା ଶେତା ପଡିଯାଇଛି । ଦୁଇ ତିନି ଥର ଛେପ ଢୋକି ସେ କହିଲା, 'ମାଉସି, ଅବନ୍ତୀକାର କପାଳ ପୋଡ଼ି ଯାଇଛି ।'

ଗୀତିକା ଚମକି ପଡ଼ିଲେ, 'ଏଁ କଣ ହେଲା ? କ'ଣ ହୋଇଥିଲା ?'

ଅବନ୍ତୀକା କଇଁ କଇଁ କରି କାନ୍ଦି ଉଠିଲା, 'ମାଉସି, ତୁମେ ତ ହମୀରପୁର କଥା ଦେଖିଛ । ମୁଁ ନରକର କୀଟ । ସ୍ୱର୍ଗରେ ରହନ୍ତି କିପରି ? ଭାଗ୍ୟ ସହିଲାନି । ତିନି ବର୍ଷ ତଳେ ମିଜୋରାମରେ ଗୋଟିଏ ଏମ୍.ଆଇ.-୮ ହେଲିକପ୍ଟର ଦୁର୍ଘଟଣାରେ ଧ୍ୱଂସ ହେଲା । ସେଥିରେ ପ୍ରଶାନ୍ତ କମାଣ୍ଡର ଥିଲା । ପ୍ରଶାନ୍ତ ହାତରେ ଦୁର୍ଘଟଣା ହେବା ଭାବିବା ମଧ୍ୟ ଅସମ୍ଭବ । ସେ ଡ଼ାକିଲେ ଉଡ଼ାଜାହାଜ ଓ କରିବ । ପରେ ଇନକ୍ୱାରିରେ ଜଣାଗଲା ଯେ ବିଦ୍ରୋହୀ ମାନଙ୍କ ରକେଟ ଆକ୍ରମଣରୁ ଏହା ହେଲା । ଯାହାହେଉ ସେ ତ ପୁରୁଷ, ଯୋଦ୍ଧା, ବୀରଗତି ନେଇ ଚାଲିଗଲା । ମୁଁ ପଡ଼ିରହିଲି କାଳ ସରୁନି, ପ୍ରତିଦିନ ଯେପରି ଗୋଟେ ଯୁଗ । କାହାକୁ କହେନି । ପୁଅଟିଏ ତାର ଦାୟିତ୍ୱ ତ ଅଛି । ମା'କୁ ଆଣି ପାଖରେ ରଖିଛି । ମୁଁ ତ ଡ଼ିଉଟିରେ ଯିବି । ମା ପିଲା କଥା ଦେଖେ । ଭାବିଥିଲି ଚାକିରି ଛାଡିଦେବି । ମାସେ ଛୁଟି ନେଇ ଦେଖିଲି ବଡ କଷ୍ଟ । ସମୟ ସରୁ ନାହିଁ । ଏଣୁ ଫେରି ଆସିଲି ।'

ଗୀତିକା ତାକୁ ଆଉଁସି ଦେଲେ, କହିଲେ 'ମା, ସଂସାରରେ ନ କାନ୍ଦିଛି ଏପରି କେହି ନାହିଁ । ଆଜି ତୋତେ କହୁଛି । ତୁ ଯାହା ପାଇଛୁ ଓ ତୋର ଯେଉଁ ସମ୍ପଦ ଅଛି ତାହା କେତେ ଜଣଙ୍କର ପାଖରେ ଅଛି ? ତୁ ପ୍ରେମ ପାଇଛୁ । ବହୁତ କମ ଲୋକଙ୍କୁ ତା ମିଳେ ମା । ଅଧିକାଂଶ ମୋ ଭଳି । ଜୀବନର ଶଗଡ଼ରେ ଯୋଚା ହଳେ ବଳଦ । ଇଚ୍ଛା ଅନିଚ୍ଛାର ପ୍ରଶ୍ନ ନାହିଁ । ଗାଡ଼ି ଟାଣି ଚାଲିଛୁ । ଶେଷରେ କ'ଣ ? ଏକ ଶୂନ୍ୟତା । କାରଣ ପରସ୍ପରକୁ ଆମେ ପାଇନାହୁଁ କି ହୁଏତ ପାଇବାର ଚେଷ୍ଟା ମଧ୍ୟ କରିନାହୁଁ । କେବଳ ସାମାଜିକ ଓ ଜୈବିକ

ନୀତି ପାଳନ କରି ଆସିଛୁ । ପ୍ରଶାନ୍ତ ନାହିଁ ସତ୍, କିନ୍ତୁ ତୋ ମନ ଭିତରେ ତ ଅଛି । ଏବଂ ସେ ପ୍ରଶାନ୍ତ ଅଜର ଅମର । ପ୍ରଶାନ୍ତ ସବୁବେଳେ ତୋ ପାଖରେ ଅଛି । ଏବଂ ତୋ ସହିତ ସେ ମଧ୍ୟ ଜୀବନକୁ ଜୀଉଁଛି । ଆଉ ମୁଁ ? ମୁଁ ମରୁଭୂମିରେ ଯାତ୍ରୀ ଏକୁଟିଆ । ଲକ୍ଷ୍ୟ ମଧ୍ୟ ନାହିଁ । ସହଯାତ୍ରୀ ତ ନାହିଁ । ଏଣୁ ଯାହା ପାଇନୁ ତା ଲାଗି କାନ୍ଦନା । ଯାହା ପାଇଛୁ ତା ଲାଗି ଭଗବାନଙ୍କୁ ଧନ୍ୟବାଦ ଦେ । ତୁ ତ ଭଲ ରବୀନ୍ଦ୍ର ସଙ୍ଗୀତ ଗାଉଥିଲୁ । ତୋଠାରୁ ଅନେକ ଥର ଗୋଟିଏ ଗୀତ ଶୁଣିଛି 'କି ପାଇନି, ହିସେବ ମିଲାତେ ମନ ମୋର ନାହିଁ ରାଜି' । ଅତ୍ୟନ୍ତ ସତ କଥା । ତୋ ଜୀବନ ତ ଶୂନ୍ୟ ନୁହେଁ । ନିରର୍ଥକ ନୁହେଁ । ତୁ ଯାହା ପାଇନୁ ତା ଲାଗି ଏତେ ବ୍ୟସ୍ତ କାହିଁକି ? ଯାହା ପାଇଛୁ ତାର ଗୌରବରେ ତୋର ଜୀବନ ଭରି ଯାଇଛି । ଭଗବାନ ତୋତେ ଶକ୍ତି ଦିଅନ୍ତୁ । ତୋର ମଙ୍ଗଳ ହେଉ ମା ।'

ଅବନ୍ତୀକା କହିଲା, 'ମାଉସି, ଡ଼ିଉଟିକୁ ଯାଉଛି । ଅଳ୍ପ ସମୟ ରହିଲା ଓହ୍ଲାଇବାକୁ । ଏଣିକି ଚିଠି ଦେବେ ।'

ଗୀତିକା କହିଲେ, 'ନିଶ୍ଚୟ ମା' ।

ଗୀତିକାଙ୍କ ଆଖିରୁ ଅଜାଣତରେ ଲୁହ ବାହାରିଯାଇଥିଲା । ପ୍ରଶାନ୍ତ ଓ ଅବନ୍ତୀକାର ପ୍ରେମ ପ୍ରଶାନ୍ତର ମୃତ୍ୟୁ ପରେ ମଧ୍ୟ ସୂର୍ଯ୍ୟ ପରି ଭାସ୍ୱର ଏବଂ ତାର ଉତ୍ତାପ ଗୀତିକାଙ୍କ ମନରେ ଜମାଟ ବାନ୍ଧିଥିବା ବରଫକୁ ଆଜି ତରଳାଇ ଦେଇଛି ।



# ଅସ୍ପୃଶ୍ୟତା ନିବାରଣ

ବହୁତ ଦିନର କଥା । ସ୍ଥାନ ଓଡ଼ିଶାର ଏକ ଦେଶୀୟ ରାଜ୍ୟ ବା ନେଟିଭ ଷ୍ଟେଟ । ଇଂରେଜ ଯେ ଭାରତ ଛାଡ଼ି ଯିବେ ତାହା ଇଂରେଜ ଶାସିତ ଅଞ୍ଚଳରେ ସ୍ପଷ୍ଟ ହୋଇ ସାରିଥିଲା । କିନ୍ତୁ ନେଟିଭ ଷ୍ଟେଟରେ ଏ ଧାରଣାଟା ମୋଟେ ଜମି ପାରି ନଥିଲା । ବିଶେଷ କରି ଉକ୍ତ ରାଜ୍ୟରେ ପ୍ରଜାମଣ୍ଡଳର ସେପରି ପ୍ରଭାବ ନ ଥିବାରୁ ଏସବୁ ରାଜଦ୍ରୋହୀ ଭାବଧାରାର ପ୍ରଚାର ହୋଇପାରିନଥିଲା । ଅଧିକାଂଶ ରାଜା ଓ ତାଙ୍କ ପାରିଷଦବର୍ଗ ବୁଝି ପାରୁ ନଥିଲେ ଯେ ଯଦି କଂଗ୍ରେସ ବ୍ରିଟିଶ ସରକାରଙ୍କୁ ଭାରତ ଛାଡ଼ିବାକୁ ବାଧ କରିପାରେ, ତାହେଲେ ନଅ ତୋପ ସଲାମୀବାଲା ରଜାର କଣ କ୍ଷମତା । ସେମାନେ ଭାବୁଥିଲେ ଯେ ବ୍ରିଟିଶ ଗଲେ ସେମାନେ ପୂରା ସ୍ୱାଧୀନ ହୋଇଯିବେ ଓ କ୍ଷାତ୍ରଧର୍ମ ପାଳନ କରିବେ । ସେମାନଙ୍କ ମଧ୍ୟରୁ ଅନେକ ଭାବୁଥିଲେ ଯେ ଗାନ୍ଧୀ ତାଙ୍କ ନମକ ଖାଇଛି । ଅର୍ଥାତ ସେ ପୋରବନ୍ଦର ଦେୱାନଙ୍କ ପୁଅ । ଏଣୁ ଗାନ୍ଧୀ ତାଙ୍କର ଅନୁରକ୍ତ ହୋଇ ରହିବ । ମୋଟକଥା ସେମାନେ ଏକ କଳ୍ପନା ରାଜ୍ୟରେ ବିଳାସ କରୁଥିଲେ ଏବଂ ଫଳତଃ ରାଜ୍ୟରେ ସାମାଜିକ ପ୍ରଗତି ହୋଇ ନଥିଲା । ସାମାଜିକ ଅବସ୍ଥାଟା ପ୍ରାୟ ଦୁଇଶହ ବର୍ଷ ହେଲା ଅପରିବର୍ତ୍ତିତ ରହିଯାଇଥିଲା ।

ତେବେ ନିକଟବର୍ତ୍ତୀ ବ୍ରିଟିଶ ଜିଲ୍ଲାରେ ଯେଉଁ ସବୁ ହୁଲୁସ୍ଥୁଲ ଜୁଆର ଉଠିବା ଆରମ୍ଭ ହୋଇଥିଲା ତାର କିଛି କିଛି ଲହରି ସେ ସବୁ ରାଜ୍ୟରେ ମଧ ପହଞ୍ଚିବା ଆରମ୍ଭ କଲାଣି । ଷ୍ଟେଟରେ ସମାଜ ବ୍ୟବସ୍ଥା ପୂରାପୂରି ବର୍ଣ୍ଣାଶ୍ରମ ଧର୍ମକୁ ଆଶ୍ରୟ କରି ସେଠାରେ ନିୟମ ଥିଲା ।

ଢୋଲ, ବାନର, ଶୁଦ୍ର ଅଉର ନାରୀ
ଯେ ସବ ତାଡ଼ନ କେ ଅଧିକାରୀ ।

ଏହି ସମୟରେ ସେଠି ମଧ ଗାନ୍ଧୀ ହାଓ୍ୱା ବାଜିଲା । କଟକରେ ପଢୁଥିବା ଦୁଇଟାରିଜଣ କଲେଜ ଟୋକା ତାଙ୍କରି ସମବୟସ୍କ କେତେଜଣଙ୍କୁ ଡାକି ସଭାକରି ଅସ୍ପୃଶ୍ୟତା ନିବାରଣ ସମ୍ବନ୍ଧରେ ବକ୍ତୃତା ଦେଲେ । ଏହା ଷ୍ଟେଟ ପକ୍ଷରେ ଏକ ଅସମ୍ଭବ ସମସ୍ୟା ହୋଇ ଠିଆ

ହେଲା । ଷ୍ଟେଟରେ କୌଣସି ରାଜନୈତିକ ଆନ୍ଦୋଳନ ନଥିବାରୁ ଷ୍ଟେଟ ପୋଲିସର ମିଟିଂ ରିପୋର୍ଟ ଲେଖିବାର ଆଦୌ ଅଭିଜ୍ଞତା ନଥିଲା । ଏଣେ ପ୍ରକାଶ୍ୟ ସ୍ଥାନରେ ଏପରି ମିଟିଙ୍ଗ ହେଉଥିବାରୁ ତା ପ୍ରତି ଆଖି ବୁଜିଦେବା ମଧ ସମ୍ଭବ ନଥିଲା । ଏଣୁ ବଡ଼ବାବୁ ନିକଟବର୍ତ୍ତୀ ବ୍ରିଟିଶ ଇଲାକାର ଥାନାକୁ ଯାଇ ସେଠାର ବଡବାବୁଠାରୁ ରିପୋର୍ଟ ଲେଖିବାର ଗହନ ତତ୍ତ୍ୱ ଶିଖିଲେ । ଏବଂ ସେଠା ବଡବାବୁ ମଧ ନିଜ ଏସ୍.ପି.ଙ୍କ ପାଖକୁ ଏକ ଜରୁରୀ ରିପୋର୍ଟ ଦେଲେ ଯେ ଉକ୍ତ ଗଡ଼ଜାତରେ ଗାନ୍ଧୀବାଦୀ ଧାରଣା ସବୁ ବ୍ୟାପି ଗଲାଣି । ଏ ଖବର ଏସ.ପି. ଅଫିସରୁ କଂଗ୍ରେସ ଅଫିସକୁ ପହଞ୍ଚିଗଲା ଏବଂ ଦେଶର ଚାରିଆଡେ ବ୍ୟାପିଗଲା । ଏଥିପାଇଁ ଅନେକ ନେତା କୃତିତ୍ୱ ନେବାକୁ ଚେଷ୍ଟା କଲେ ଓ ପ୍ରଚାର କରିବା ଆରମ୍ଭ କଲେ ଯେ ସେମାନେ ହିଁ ଏହି ଆନ୍ଦୋଳନକୁ ନେତୃତ୍ୱ ଦେଉଚନ୍ତି । (ଯଦିଚ ଏହା ସହିତ ତାଙ୍କର ଆଦୌ ସମ୍ପର୍କ ନଥିଲା ଏବଂ ସତ କଥା କୌଣସି ଆନ୍ଦୋଳନ ମଧ ନଥିଲା ।) ଫଳତଃ ଦୁଇ ଚାରି ଜଣ ନେତାଙ୍କ ଭିତରେ କଥାବାର୍ତ୍ତା ମଧ ବନ୍ଦ ହୋଇଗଲା ।

ଏ ଆନ୍ଦୋଳନ ପ୍ରକୃତରେ ଯାହା ହେଉନା କାହିଁକି, ପ୍ରଚାର ଯୋଗୁଁ ଏପରି ଅସ୍ତିତ୍ୱ ପାଇ ସାରିଥିଲା ଯେ ନେତାଗଣଙ୍କର ଏହାକୁ ନେତୃତ୍ୱ ଦେବା ଛଡ଼ା ଉପାୟ ନାହିଁ । ଏଣୁ ସେ ସମୟର ତୁଙ୍ଗ ଯୁବନେତା ବାଞ୍ଛାନିଧି ଉପାଧାୟ ଦଳବଳ ସହିତ ଉକ୍ତ ଗଡ଼ଜାତକୁ ଗସ୍ତରେ ଆସିଲେ । ଉପାଧାୟ ମହାଶୟଙ୍କର ଧାରଣା ଥିଲା ଯେ ଷ୍ଟେଟ ଭିତରକୁ ପଶିଲାକ୍ଷଣି ତାଙ୍କୁ ଗିରଫ କରାଯିବ । ସମ୍ବାଦଦାତା ମଧ ସାଙ୍ଗରେ ଥିବାରୁ ସାଙ୍ଗେ ସାଙ୍ଗେ ପ୍ରଚାର ହୋଇଯିବ । କିନ୍ତୁ ଦୁଃଖର କଥା ଯେ ତାଙ୍କ ଗସ୍ତ ପ୍ରୋଗ୍ରାମ ଆଗରୁ ଦରବାରକୁ ଜଣା ନଥିବାରୁ ଗିରଫଦାରୀ ଏବଂ ଅନ୍ୟାନ୍ୟ ସ୍ୱାଗତ ବ୍ୟବସ୍ଥା ମୋଟେ କରାଯାଇନଥିଲା । ଉପାଧାୟ ମହାଶୟ ଓ ତାଙ୍କ ସାଙ୍ଗୋପାଙ୍ଗମାନଙ୍କୁ ଗିରଫ କରିବାକୁ ବା ପାଛୋଟି ନେବାକୁ ଆସି ନଥିଲେ । ମନଟା ଦବିଗଲା । ତେବେ କଣ କରାଯିବ । ଗୌରୀପୁର ବସ (ସେ କାଳର ନାଁ ଲରୀ)ରେ ବସିଲେ । ଘଣ୍ଟାକ ପରେ ଗୌରୀପୁରରେ ପହଞ୍ଚିଲେ । ତେବେ ଯିବେ କୁଆଡେ, ରହିବେ କେଉଁଠି । ଯେଉଁମାନଙ୍କୁ ନେତୃତ୍ୱ ଦେବେ ସେମାନେ ବା କାହାନ୍ତି । ଏହି ଅଭିଯାତ୍ରୀଦଳ ଏକ ପ୍ରକାର କିଂକର୍ତ୍ତବ୍ୟବିମୂଢ଼ ହୋଇ ବଜାର ମଝିରେ ଠିଆ ହୋଇଛି । କିନ୍ତୁ ଈଶ୍ୱର ପରମ ଦୟାଳୁ । ସମସ୍ତ ସମସ୍ୟାର ସମାଧାନ ତ କେବଳ ତାଙ୍କରି ପାଖରେ । ଏହି ସମୟରେ ଦେଖାଗଲା ଓକିଲ ଚନ୍ଦ୍ରମାଧବ ବାବୁ ଆସୁଛନ୍ତି । ଚନ୍ଦ୍ରମାଧବ ବାବୁ ଗୌରୀପୁର କୋର୍ଟର ଏକମାତ୍ର ଏବଂ ସର୍ବଶ୍ରେଷ୍ଠ ଓକିଲ । ଏ ମହାଶୟ ଗୌରୀପୁର ଷ୍ଟେଟର ପ୍ରଥମ ଓକିଲାତି ପାଶ କଲାବାଲା । ତା ପରେ ଦରବାରରେ ମାଜିଷ୍ଟ୍ରେଟ ଚାକିରି କରୁଥିଲେ । କିନ୍ତୁ ତାଙ୍କର ବୋତଲବାସିନୀ ପ୍ରତି ଦୁର୍ବଳତାଟା ମାତ୍ରା ପାର କରିଯିବାରୁ ତାଙ୍କୁ ଚାକିରି ଛାଡ଼ି ଦେବାର ଉପଦେଶ ଦିଆଗଲା । ତାପରେ ସେ ଚାକିରି ଛାଡ଼ି ଓକିଲାତି କଲେ ଏବଂ

ଏରଣ୍ଡୋପି ଦ୍ରୁମାୟତେ ପଦ୍ଧତିରେ ବେଶ ପ୍ରସିଦ୍ଧି ମଧ୍ୟ ଲାଭ କଲେ । ଓକିଲ ସ୍ୱାଧୀନଚେତା ମଧ୍ୟ ହେବା ଉଚିତ । ତେଣୁ ସେ ଅଫିସରଗଣଙ୍କ ସହିତ କଳି କଜିଆ କରିବାରେ ମଧ୍ୟ ବେଶ ନାଁ କଲେ । ହଠାତ୍ ଉଭୟ ପକ୍ଷଙ୍କର ଚାରିଚକ୍ଷୁ ମିଳନ ହୋଇଗଲା । ପରସ୍ପରର ପରିଚୟ ନିଆଗଲା । ଚନ୍ଦ୍ରମାଧବ ବାବୁ ଦେଖିଲେ ଯେ ଏହା ନିଜର ସ୍ୱାଧୀନଚେତାତ୍ୱ ପ୍ରମାଣିତ ଓ ପ୍ରଚାରିତ କରିବାର ସୁବର୍ଣ୍ଣ ସୁଯୋଗ । ସେ ସାଙ୍ଗେ ସାଙ୍ଗେ ବୁଝିଗଲେ ଯେ ଏହା ଖବରକାଗଜରେ ବାହାରିବ ଏବଂ ତା ସାଙ୍ଗେ ସାଙ୍ଗେ ନାଁ ମଧ୍ୟ । ଭବିଷ୍ୟତରେ ସେଥିରୁ ଅନେକ ଫାଇଦା ବାହାରି ପାରେ । ଚନ୍ଦ୍ରମାଧବ ବାବୁଙ୍କ ପ୍ରସ୍ତାବ ମତେ ଏ ଅଭିଯାତ୍ରୀଦଳ ଚନ୍ଦ୍ରମାଧବ ବାବୁଙ୍କର ଆତିଥ୍ୟ ଗ୍ରହଣ କଲେ । କଲେଜ ଟୋକାଙ୍କୁ ଖବର ଦିଆଗଲା । ସନ୍ଧ୍ୟାବେଳକୁ ଭବିଷ୍ୟତ କର୍ମପନ୍ଥା ବିଷୟରେ ଆଲୋଚନା କରିବାର ବ୍ୟବସ୍ଥା ହେଲା ।

ସନ୍ଧ୍ୟାବେଳେ ଚନ୍ଦ୍ରମାଧବ ବାବୁଙ୍କ ଘରେ ଭବିଷ୍ୟତ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରିବା ପାଇଁ ଏକ ବୈଠକ ହେଲା । ସମସ୍ତେ ପ୍ରଚଳିତ କୁପ୍ରଥା ବିରୁଦ୍ଧରେ ଦୀର୍ଘକାଳୀନ ସଂଗ୍ରାମ ଚଳାଇଯିବାକୁ ବଦ୍ଧପରିକର । କିନ୍ତୁ ସମସ୍ୟା ହେଲା ସ୍ୱଳ୍ପକାଳୀନ ସଂଗ୍ରାମ ଅର୍ଥାତ କାଲି ଓ ପରଦିନ କ'ଣ କରିବାକୁ ହେବ । କାରଣ ଉପାଧ୍ୟାୟ ବାବୁ ଦୁଇଦିନରୁ ବେଶି ରହିପାରିବେ ନାହିଁ । ପିଲାଙ୍କର ମଧ୍ୟ କଲେଜ ଖୋଲିବ ଓ ସେମାନଙ୍କୁ କଟକ ଫେରିଯିବାକୁ ପଡିବ । ଜଣେ କହିଲା ସତ୍ୟାଗ୍ରହ କରାଯାଉ, କିନ୍ତୁ ପ୍ରଶ୍ନ ହେଲା କେଉଁଠି ଓ କାହିଁକି । ଏହିପରି ଅନେକ ପ୍ରସ୍ତାବ ଆଲୋଚନା ହେଲା । ଶେଷକୁ ଚନ୍ଦ୍ରମାଧବ ବାବୁହିଁ ଏକ କାର୍ଯ୍ୟକାରୀ ପ୍ରସ୍ତାବ ଦେଲେ । ତାଙ୍କର ଜଣେ ଡମ ମହକିଲ ଅଛି । ତାର ଗୋଟିଏ କେସ୍ ଲଢି ତାକୁ ଖଲାସ କରାଇଥିବା ହେତୁ ସେ ଚନ୍ଦ୍ରମାଧବ ବାବୁଙ୍କ ଅନୁଗତ । ତାର ଡମମାନଙ୍କ ଭିତରେ ବେଶ ପ୍ରଭାବ ଅଛି କାରଣ ସେ ପଇସାବାଲା ଚମଡ଼ା ବ୍ୟବସାୟୀ । ତାକୁ କହିଲେ ସେ ଡମ ସାହିରେ ଏକ ସଭାର ଆୟୋଜନ କରିବ, ଏବଂ ଏକ ଜାତି ନିର୍ବିଶେଷରେ ପଂକ୍ତିଭୋଜନର ମଧ୍ୟ ବ୍ୟବସ୍ଥା କରିବ । ଉପାଧ୍ୟାୟ ମହାଶୟ, ଚନ୍ଦ୍ରମାଧବ ବାବୁ ଓ ଅନ୍ୟାନ୍ୟ ସବର୍ଣ୍ଣ ଲୋକେ ଯଦି ଡମମାନଙ୍କ ସାଙ୍ଗରେ ଖାଇ ବସନ୍ତି ତା ହେଲେ ଏ ଖବର ସବୁ ପ୍ରସିଦ୍ଧି ଲାଭ କରିବ । ହୋଇପାରେ ଲୋକତନ୍ତ୍ର ଏହା ଉପରେ ଏକ ସମ୍ପାଦକୀୟ ମଧ୍ୟ ଛାଡି ଦେଇପାରେ । ଏଣୁ ଠିକ୍ ହେଲା କାଲି ସକାଳୁ ସାଇତା ଡମକୁ ଖବର ଦିଆଯାଇ ବିହିତ ବ୍ୟବସ୍ଥା କରାଯାଉ । ସାଇତାର କେସ୍‌ରୁ ଖଲାସ ହେବା ପରେ ଚନ୍ଦ୍ରମାଧବ ବାବୁଙ୍କ ଉପରେ ଅଗାଧ ବିଶ୍ୱାସ । ଏଣୁ ସେ ସମସ୍ତ ବ୍ୟବସ୍ଥା କରିବାକୁ ରାଜି ହୋଇଗଲା । ଆଉ ଏକ କାରଣ ମଧ୍ୟ ଥିଲା । ଭୋଜିଟା ତ ଘର ସାମନାରେ ହେବ ଏବଂ ତା ଦ୍ୱାରା ଡମ ସମାଜରେ ତାର ସାମାଜିକ ପ୍ରତିଷ୍ଠା ସୁପ୍ରତିଷ୍ଠିତ ହୋଇଯିବ ।

ତା ପରଦିନ ଏହି ଅଦ୍ୱିତୀୟ କାର୍ଯ୍ୟକ୍ରମ ଅନୁଷ୍ଠିତ ହେଲା । ଡମ ସାହିରେ ସାଇତା

ଘର ଆଗରେ ଓସ୍ତଗଛ ମୂଳେ ସଭା ହେଲା । ମୁଖ୍ୟ ବକ୍ତା ଉପାଧ୍ୟାୟ ବାବୁ । ସବୁ ମନୁଷ୍ୟ ଯେ ଏକ ଈଶ୍ୱରଙ୍କ ସନ୍ତାନ ଏବଂ ଅସ୍ପୃଶ୍ୟତା ଏକ ମହାପାପ ଏ ବିଷୟରେ ପ୍ରାୟ ଅଧଘଣ୍ଟେ କହିଲା ପରେ ସେ ଜନଗଣଙ୍କୁ ସଂଗଠିତ ହୋଇ ଗାନ୍ଧୀଜୀଙ୍କ ଆଦର୍ଶ ଅନୁସରଣ କରିବାକୁ ଅନୁରୋଧ କଲେ । ଚନ୍ଦ୍ରମାଧବ ବାବୁ ମଧ୍ୟ ଭଲ ବକ୍ତୃତାଟିଏ ଛାଡ଼ିଲେ । ତା ପରେ ଭୋଜି, ଡମମାନେ ପରିଷ୍କାର ପରିଚ୍ଛନ୍ନତାର ଅତି ଉଚ୍ଚ ମାନ ପ୍ରଦର୍ଶନ କଲେ । ସବୁ ନୂଆ ହାଣ୍ଡିରେ ରନ୍ଧା । ବିଶୁଦ୍ଧ ନିରାମିଷ । ଅରୁଆ ଭାତ, ମୁଗ ଡ଼ାଲି, ଦୁଇଟା ସାଦା ତରକାରି ଓ ଭଜା । ଅତି ସାତ୍ୱିକ କାରବାର । ପରଶୁଣିମାନେ ମଧ୍ୟ ଗାଧୋଇ, ଧୂଆଲୁଗା ପିନ୍ଧି ପରସିଲେ । ସମସ୍ତେ ତୃପ୍ତିର ସହିତ ଭୋଜନ କଲେ । ଲୋକତନ୍ତ୍ରର ପ୍ରତିନିଧି ସାଇତାର ଏକ ଇଣ୍ଟରଭିଉ ମଧ୍ୟ ନେଲେ । ବିଚରା ସାଇତା ଆଉ କଣ କହନ୍ତା । ତା ଲାଗି ଚନ୍ଦ୍ରମାଧବ ବାବୁ କିଛି କହିଲେ । ମୋଟ ଉପରେ ସବୁ ଠିକ୍ ଠାକ୍ ହୋଇଗଲା । ତା ଆରଦିନ ଉପାଧ୍ୟାୟ ବାବୁଙ୍କ ଗୋଷ୍ଠି କଟକ ଫେରିବେ ।

ଏସବୁ ଘଟଣାର ଖବର ଦରବାରରେ ଅବଶ୍ୟ ପହଞ୍ଚିଛି । କିନ୍ତୁ ବର୍ତ୍ତମାନ ସେମାନେ କିଂକର୍ତ୍ତବ୍ୟବିମୂଢ଼ । ଏମାନଙ୍କୁ ଗିରଫ କରାଯାଇ ପାରିଥାନ୍ତା । କିନ୍ତୁ କାଗଜବାଲା ଅଛି । ପୁଣି ଏମାନଙ୍କୁ ରଖିବା କେଉଁଠି ? ରାଜମାତା ଖବର ଦେଇଛନ୍ତି ଯେ କୌଣସି ବ୍ରାହ୍ମଣଙ୍କୁ ଜେଲରେ ରଖାଯିବ ନାହିଁ । କାରଣ ସେଠି ଅସ୍ପୃଶ୍ୟ ଲୋକ ଭର୍ତ୍ତି । ଯଦିଚ ତାଙ୍କୁ ବୁଝାଗଲା ଯେ ଦଳଟା ଅସ୍ପୃଶ୍ୟତା ମାନନ୍ତି ନାହିଁ । କିନ୍ତୁ ରାଜମାତା କହି ପଠାଇଲେ ଯେ ଅନ୍ୟ କେହି ଅନାଚାର କଲା ବୋଲି ସେ ଅନାଚାରର ଅନୁମତି ଦେବେ ନାହିଁ । ଏହିପରି ଆଲୋଚନା ଢେର ରାତି ପର୍ଯ୍ୟନ୍ତ ଚାଲିଲା କିନ୍ତୁ କୌଣସି ନିଷ୍ପତ୍ତି ନିଆଯାଇ ପାରିଲା ନାହିଁ । ଅସଲ କଥା ହେଲା କାହାର କିଛି କରିବାର ଏବଂ ତା ଲାଗି ଦାୟିତ୍ୱ ନେବାର ଇଚ୍ଛା ନଥିଲା । ସମସ୍ତଙ୍କ ମନେ ମନେ କାଦୁଅରେ ପଶିବି କାହିଁକି, ଗୋଡ଼ ଧୋଇବି କାହିଁକି ?

କିନ୍ତୁ ଡ଼ମ ସାହିର ଭୋଜିର ଏକ ଅତ୍ୟନ୍ତ ଅତିରଞ୍ଜିତ ବିବରଣୀ ଗୌରୀପୁର ସବର୍ଣ୍ଣ ସମ୍ପ୍ରଦାୟରେ ବ୍ୟାପି ଯାଇଥିଲା । ପ୍ରଚାର ହୋଇଥିଲା ଯେ ଉକ୍ତ ଭୋଜିରେ ଅନେକ ଅଖାଦ୍ୟ କୁଖାଦ୍ୟ ରନ୍ଧା ଯାଇଥିଲା । କେହି ଏକଥା ଭାବିଲାନି ଯେ ଡମ ଅଖାଦ୍ୟ କୁଖାଦ୍ୟ ପାଇବ କେଉଁଠୁ । ଅଖାଦ୍ୟର ଦାମ ଯେ ସାତ୍ୱିକ ଖାଦ୍ୟ ଅପେକ୍ଷା ଅନେକ ବେଶି । ଏହି ବର୍ଣ୍ଣନା ସେଠାରେ ପ୍ରଧାନ ପଣ୍ଡିତଙ୍କ ପାଖରେ ପହଞ୍ଚିଲା । ପଣ୍ଡିତେ ଘୋର ନୈଷ୍ଠିକ ଏବଂ ବର୍ଣ୍ଣାଶ୍ରମ ଧର୍ମକୁ ରକ୍ଷା କରିବା ଦାୟିତ୍ୱ ଯେ ଭଗବାନ ତାଙ୍କୁ ଦେଇଛନ୍ତି ଏ ବିଷୟରେ ସେ ସମ୍ପୂର୍ଣ୍ଣ ନିଃସନ୍ଦେହ । ଦରବାରରେ ଏ ବିଷୟରେ ଉଦାସୀନତା ଶୁଣି, ଅତ୍ୟନ୍ତ କ୍ଷୁବ୍ଧ ହେଲେ । କ୍ଷତ୍ରିୟଙ୍କୁ ଏପରି କ୍ଳୀବତ୍ୱ ଗ୍ରାସ କଲେ ତ ଧର୍ମ ରହିବ ନାହିଁ । କିନ୍ତୁ ଯଦି କ୍ଷତ୍ରିୟ ତାର କର୍ତ୍ତବ୍ୟ ନକରେ ତାହେଲେ ବ୍ରାହ୍ମଣଙ୍କୁ ହିଁ ଧର୍ମରକ୍ଷା ପାଇଁ ଯାହା କରିବାର ଆବଶ୍ୟକ ତା କରିବାକୁ ହେବ ।

ସବୁଠାରୁ ଦୁଃଖର କଥା ଅଧର୍ମ ପକ୍ଷକୁ ନେତୃତ୍ୱ ଦେଉଛି ଜଣେ ବ୍ରାହ୍ମଣ । ଘୋର କଳି । ଘୋର କଳି ।

ସକାଳ ଆଠଟାରେ ( ଷ୍ଟେସନକୁ ଯିବାଲାଗି ବସ ଛାଡିବ । ଶ୍ରୀ ଉପାଧ୍ୟାୟଙ୍କ ଗସ୍ତ ସଫଳତାର ସହିତ ସମ୍ପନ୍ନ ହୋଇଛି । ବେଶ କିଛି ଲୋକ, ବିଶେଷ କରି ଛାତ୍ର ସମ୍ପ୍ରଦାୟ ଓ ଡ଼ମ ସାହିରୁ କିଛି, ନେତାଙ୍କୁ ବିଦାୟ ଦେବାଲାଗି ଆସିଛନ୍ତି । ଜୟ ଜୟ ସରିଗଲାଣି । ଏ ସମୟରେ ଦେଖାଗଲା ପଣ୍ଡିତେ ଆସୁଛନ୍ତି ।

ବଜ୍ରଗମ୍ଭୀର କଣ୍ଠରେ ପଣ୍ଡିତେ ଘୋଷଣା କଲେ, 'ତୁମେ ବ୍ରାହ୍ମଣ ହୋଇ ଧର୍ମକୁ ଶାସ୍ତ୍ରକୁ ଏଡ଼େ ଅପମାନ କଲ । ଯାହା ପାପ ତୁମକୁ ଓ ଚନ୍ଦ୍ରମାଧବଙ୍କୁ ଲାଗିବ' । ଉପାଧ୍ୟାୟବାବୁ ବଡ଼ ଥଣ୍ଡା ସ୍ୱରରେ ପଚାରିଲେ 'ଆଜ୍ଞା, କି ପାପ କଲୁ । ସକଳ ଘଟେ ନାରାୟଣ । କ'ଣ ଡମର ଘଟରେ ନାରାୟଣ ନାହାନ୍ତି ? ତାହେଲେ ଭାଗବତ କ'ଣ ମିଥ୍ୟା ?'

ଠିକ୍ ଏଥିଲାଗି ପଣ୍ଡିତେ ପ୍ରସ୍ତୁତ ନଥିଲେ । ତେବେ ସେ ଦବିବାର ପାତ୍ର ନୁହନ୍ତି । ତତ୍‌କ୍ଷଣାତ୍ ଗର୍ଜି ଉଠିଲେ 'ପାପୀ ସବୁବେଳେ କୁତର୍କ କରିପାରେ । କହ, ତମେ ସେଠି ପୋଢ ମାଉଁସ ଖାଇନାହଁ ?'

ଏଭଳି ଅଦ୍‌ଭୁତ ଆକ୍ରମଣ ଲାଗି କେହି ପ୍ରସ୍ତୁତ ନଥିଲେ । ପ୍ରଥମେ ସମସ୍ତେ ଆଁ କରି ରହିଗଲେ ତା ପରେ ସାମୁହିକ ହସ । ଉପାଧ୍ୟାୟ ବାବୁ ଥଣ୍ଡା ସ୍ୱରରେ କହିଲେ 'ଆଜ୍ଞା ଆପଣ ଭୁଲ ଶୁଣିଛନ୍ତି । ଭୋଜିରେ କୌଣସି ରକମର ଆମିଷ ରନ୍ଧା ହୋଇ ନଥିଲା । ପୋଢ ମାଂସ ତ କଳ୍ପନାର ବାହାରେ ।'

ପଣ୍ଡିତେ କ୍ଷଣମାତ୍ର ଦ୍ୱିଧାଗ୍ରସ୍ତ ଅବସ୍ଥାରେ ଠିଆ ହୋଇ ରହିଲେ । କିନ୍ତୁ ତର୍କବାଚସ୍ପତି ଏ ସାମାନ୍ୟ ଜାଲ ଛେଦ କରିପାରିବେ ନାହିଁ ? ଗର୍ଜନ କରି ଉଠିଲେ, 'ଯାହା ଡମ ଘରେ ରନ୍ଧା ହେଉ ତା ପୋଢ ମାଂସ ।' ଏହା କହି ବୁଲି ପଡ଼ି ଗଟ୍ ଗଟ୍ ହୋଇ ଚାଲିଗଲେ ।

ପଣ୍ଡିତଙ୍କ କଥା ସମସ୍ତଙ୍କୁ ଚକିତ କରି ଦେଇଛି, କାହା ମୁହଁରେ କଥା ନାହିଁ । ସମସ୍ତେ କ୍ରମଶଃ ଦୂରେଇ ଯାଉଥିବା ପଣ୍ଡିତଙ୍କ ଆଡ଼କୁ ଚାହିଁଛନ୍ତି । ଯେପରି ଚାଲିଯାଉଥିବା ଯୁଗର ଜୀବନ୍ତ ପ୍ରତୀକ ।



# ଚିକିତ୍ସା, ମା ମେରୀ ଓ ମା କାଳୀ

ମୋର ବନ୍ଧୁ ଡ଼ିକ୍ରୁଜ ନିଜର ପର୍ତ୍ତୁଗୀଜ୍ ରକ୍ତ ସମ୍ବନ୍ଧରେ ଅତି ସଚେତନ । ପୂରା ନାମ ହେଲା IGNATIUS GABRIE JOSE MARIA DECRUZ । ଏଣୁ ବାହାରେ ଲୋକେ ଡ଼ିକ୍ରୁଜ୍ ଏବଂ ଘରେ ଯେଉଁମାନଙ୍କର ନାଁ ଧରି ଡ଼ାକିବା କଥା ସେମାନେ ତାକୁ ବୁଲୁ ବୋଲି ଡ଼ାକନ୍ତି । ବର୍ଣ୍ଣ ଉଜ୍ଜ୍ୱଳ ଶ୍ୟାମ ଓ ସେ ଯେଉଁ ଭାଷାରେ କଥା କହୁନା କାହିଁକି ସେମାନଙ୍କର ଆଦିନିବାସ ଯେ ପଦ୍ମାନଦୀର ଯଥେଷ୍ଟ ପୂର୍ବରେ ସେ ବିଷୟରେ କୌଣସି ସନ୍ଦେହର ଅବକାଶ ନଥାଏ । ପର୍ତ୍ତୁଗୀଜ ରକ୍ତ ବିଷୟରେ ତାର ସଚେତନତା ନିମ୍ନ ଉକ୍ତିରୁ ଜାଣି ପାରିବେ, 'ସାଲା କବ ଯେ ପର୍ତୁଗୀଜ ହାରମାଦ ଲୋଗ୍ ପୂର୍ବବଂଗମେ ଆୟା ଥା । ଉସକା ତୋ ଅଉର କୁଛ ଫାୟଦା ନହିଁ ହୁଆ । ଖାଲି ଏକଠୋ ନାମ ଇତନା ଲମ୍ବା ବନାଦିଆ କି ହମ କଭି କଭି ଭୂଲ ଯାତା । ଦୁସରା କ୍ୟା ଇୟାଦ ରଖେଗା ?' ବୁଲୁ ଏମ୍ କମ୍ କରି ବାୟୁସେନାରେ ଆକାଉଣ୍ଟସ୍ ବ୍ରାଞ୍ଚରେ ଅଫିସର ହୋଇ ଭର୍ତ୍ତି ହେଲା । କିନ୍ତୁ ସେହି ଦିନଠାରୁ ତାର ପ୍ରଚଣ୍ଡ ଅସନ୍ତୋଷ । ଯଦି ହିସାବ ହିଁ କରିବାକୁ କପାଳରେ ଲେଖା ଥିଲା, ତାହେଲେ ତ ତାହା କଲିକତାର ଯେ କୌଣସି ମର୍ଚ୍ଚାଣ୍ଟ୍ ଅଫିସରେ କରାଯାଇପାରିଥାନ୍ତା । ତାହେଲେ ଏହି ପୋଷାକ, 'ନଭଃ ସ୍ପୃଶ୍ୟା ଦିପ୍ତ୍ୟା' ଇତ୍ୟାଦି ଲେଖା, ଗରିଆଡ଼େ ଡ଼େଣାର ଛବି, ଏସବୁ କାହିଁକି ? ଫ୍ଲାଇଂ ଅଫିସର ଡ଼ିକ୍ରୁଜ୍‌ଙ୍କର ଏରୋପ୍ଲେନ ପାଖକୁ ମଧ୍ୟ ଆସିବା ବାରଣ । ଖାଲି ଗସ୍ତଖର୍ଚ୍ଚା ବିଲ ପାସ୍ କର । ହାୟରେ କପାଳ ! ଢାଲ ନାହିଁ, ତଲଓ୍ୱାର ନାହିଁ, ନିଧିରାମ ସର୍ଦ୍ଦାର ।

ପ୍ରାୟ ପ୍ରତ୍ୟେକ ଚିଠିରେ ଏହି ବିଳାପ । ହଠାତ୍ ଏକ ଚିଠି ଆସିଲା ଏକ ଭିନ୍ନ ତାଳରେ । ''ଭାଇ ଏଥର ପାରାଚୁଟ (ଆକାଶଛତା) ବ୍ରାଂଚ ଲାଗି ଭଲଣ୍ଟିଅର ମଗା ଯାଇଛନ୍ତି । ପାଇଲେ ଅତିକମରେ ଏରୋପ୍ଲେନ୍ ନ ଚଲେଇଲେ ମଧ୍ୟ ଏରୋପ୍ଲେନରୁ ଡେଇଁବି ତ । ଆକାଶ ସାଙ୍ଗରେ ସମ୍ପର୍କ ତ ରହିବ । ବାୟୁସେନା ମୋଟୋ ଅନୁଯାୟୀ ନଭଃକୁ ସ୍ପର୍ଶ ତ କରିବି, ଦିପ୍ତୀମାନ୍ ହୁଏ କି ନହୁଏ । ଆଉ ଅତି ଫାଲତୁ କଥା ମଧ୍ୟ ନୁହେଁ, ଗରିଶହ ଟଙ୍କା

ଆଲାଉନ୍ସ ମାସକୁ ମିଳିବ । ମୁଁ ଏଠି ମା ମେରୀଙ୍କ ପାଖେ ଦୀପ ଜାଳୁଛି । କଲିକତାରେ କାଳୀଙ୍କ ପାଖରେ ବି ମାନତ କରିଥିବୁ । ମା କାଳୀ, ମା ମେରୀଙ୍କ କୃପାରୁ ଯେପରି ଏଇଟା ହୋଇଯାଏ ।'' ମା କାଳୀ, ମେରୀ ଦୁଇ ଯାହାଙ୍କ କୃପାରୁ କହନ୍ତୁ ତାହାହିଁ ହେଲା । ବୁଲୁ ଅର୍ଥାତ୍ ଫ୍ଲାଇଂ ଅଫିସର ଡ଼ିକ୍ରୁଜ ବର୍ତ୍ତମାନ ସତରେ ଫ୍ଲାଇଂ କଲେ । ପାରାଚୁଟ ବ୍ରାଞ୍ଚରେ । ଏଇଠି ବୁଲୁ ସତରେ ସୁଖୀ । ଏ କାମ ତାକୁ ଅତ୍ୟନ୍ତ ଆରେଇଲା ଓ ଏଥିରେ ତାର ନାଁ ବି ହେଲା । କେବଳ କିଛି କିଛି ଆପତ୍ତି ବୁଲୁର ବାପା ମାଙ୍କର ଏବଂ ଏକ ନୀରବ ଆପତ୍ତି ତା ସ୍ତ୍ରୀର । ଏହା ଭିତରେ ଗୋଟେ ଯୁଦ୍ଧ ମଧ୍ୟ ହୋଇଗଲା । ବୁଲୁ ଏଥିରେ ଏକ ମେଡ଼ାଲ ମଧ୍ୟ ବାଗେଇନେଲା । ମୋଟ ଉପରେ ବୁଲୁ ବର୍ତ୍ତମାନ ଅତ୍ୟନ୍ତ ଖୁସି । ସେ ଯାହା ଚାହୁଁଥିଲା ତା ପାଇଛି । ମନଲାଖି କାମ, ନାମଯଶ, ଭଲ ଦରମା, ସୁଶୀଳା ଓ ସୁଦର୍ଶନା ପତ୍ନୀ ଇତ୍ୟାଦି ଇତ୍ୟାଦି । କିନ୍ତୁ ଭାଗ୍ୟମ୍ ଫଳତି ସର୍ବତ୍ରଃ ।

ପ୍ରତିବର୍ଷ ସେନାବିଭାଗର କର୍ମଚାରୀମାନଙ୍କର ଡାକ୍ତରୀ ପରୀକ୍ଷା ହୁଏ । ପ୍ରତିବର୍ଷ ବୁଲୁର ମଧ୍ୟ ହୋଇ ଆସୁଛି । ଏଣୁ ତାର ଚିନ୍ତିତ ହେବାର କିଛି ନଥିଲା । ଏ ବର୍ଷ ମଧ୍ୟ ସେ ଡ଼ାକ୍ତରୀ ପରୀକ୍ଷା ଲାଗି ଗଲା । ଏଥର ଜଣେ ନୂଆ ଡାକ୍ତର । ସେ ହଠାତ୍ ପଚାରିଲେ 'ଡ଼ିକ୍ରୁଜ ସାହେବ, ଆପଣଙ୍କର ହୃଦୟ କାହିଁକି ଏତେ ଧୀରେ ଧୀରେ ଚାଲୁଛି ?' ବୁଲୁ ଉତ୍ତର ଦେଲା, 'ବାହାଘର ପରେ ଆଉ କଣ ସେଇଟା ଜୋର ଚାଲିବା ଭଲ ସାର । ଘର ସଂସାର ତ କରିବାକୁ ହେବ ।' ଡାକ୍ତର କହିଲେ ମୁଁ ଥଟ୍ଟା କରୁନାହିଁ । ଏହା ଅନେକ ବିପଜ୍ଜନକ ରୋଗର ପୂର୍ବାଭାସ ହୋଇପାରେ । ଆପଣ ଶୀଘ୍ର କମାଣ୍ଡ ହସ୍‌ପିଟାଲରେ ନିଜର ଚେକ୍‌ଅପ୍ କରାନ୍ତୁ ଏବଂ କମାଣ୍ଡ ହସ୍‌ପିଟାଲ ଆପଣଙ୍କୁ କ୍ଲିଅର ନ କଲା ପର୍ଯ୍ୟନ୍ତ ଆପଣ ପାରାଚୁଟରୁ ଡେଇଁ ପାରିବେ ନାହିଁ ।

ବୁଲୁର ମନ ବଡ଼ ଖରାପ । ଘରେ ଗୁମମାରି ବସି ରହିଲା । ସ୍ତ୍ରୀ ଅନେକ ସାଧ୍ୟ ସାଧନା କଲାପରେ ଅସଲ କଥାଟା ବାହାରିଲା । ସ୍ତ୍ରୀ ବହୁତ ସାନ୍ତ୍ୱନା ଦେଲେ । କିନ୍ତୁ ମନେ ମନେ ମହାଖୁସି କାରଣ ସେ ଏରୋପ୍ଲେନ ଜିନିଷଟାକୁ ହିଁ ଅତ୍ୟନ୍ତ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ଏବଂ ଏଥିରୁ ଡେଇଁ ପଡ଼ିବା, ମା ମେରୀଙ୍କ ଦୁହାଇ, ମଣିଷ ହୋଇ ଏପରି ଦୁଃସାହସିକ କାର୍ଯ୍ୟ କାହିଁକି କରିବ ? ଆଉ ଆକାଉଣ୍ଟାସ୍ କଣ ଖରାପ କାମ ? ସେହି ଦିନଠାରୁ ବୁଲୁର ଆକାଶକୁ ଯିବା ମନା, କେବଳ ପ୍ରଶାସନିକ କାମ ଦେଖୁଛି । ଯଥା ସମୟରେ କମାଣ୍ଡ ହସପିଟାଲରେ ଉପସ୍ଥିତ ହେବାର ଆଦେଶ ଆସିଗଲା । କମାଣ୍ଡ ହସପିଟାଲରେ ପାଞ୍ଚ ଦିନ ରହି ତାର ବିଭିନ୍ନ ଓ ବିଚିତ୍ର ପରୀକ୍ଷା କରାଗଲା । କିନ୍ତୁ ସମସ୍ତେ ବଡ଼ ଅଡୁଆରେ ପଡ଼ିଲେ । ବୁଲୁ ସମ୍ପୂର୍ଣ୍ଣ ସୁସ୍ଥ । ଏପରିକି ସୁସ୍ଥ ଖାଲି ନୁହେଁ, ମଜବୁତ୍ । ଶରୀରରେ କୌଣସି ଦୋଷ ନାହିଁ । ଅଥଚ ହୃଦୟ ଗତିଟା ଟିକିଏ ଧୀର । ତାର କୌଣସି କାରଣ ଜଣା ଯାଉନାହିଁ ।

ଅବଶ୍ୟ ତା ଯେ କୌଣସି ଦିଗରୁ ବୁଲୁକୁ ଅସୁବିଧାରେ ପକାଉଛି ତା ନୁହେଁ । କିନ୍ତୁ ଜଣେ ଡ଼ାକ୍ତର ଗୋଟିଏ ସମସ୍ୟା ଉତ୍‌ଥାପନ କରି ଦେଇଛି । କମାଣ୍ଡ ହସପିଟାଲରେ ବଡ଼ ବଡ଼ ଡାକ୍ତର । ବୁଲୁର ମଟର ହୃଦୟର କାରଣ ବାହାର ନକଲା ପର୍ଯ୍ୟନ୍ତ ସେମାନଙ୍କୁ ଶାନ୍ତି ନାହିଁ । କାରଣ ବୁଲୁ ପାରାଚୁଟରୁ ଡ଼େଇଁ ପାରିବ କି ନାହିଁ ତାକୁ ଫଇସଲା କରିବାକୁ ହେବ । ଏପରି ଅବସ୍ଥାରେ ସରକାରୀ ସଂସ୍ଥାମାନଙ୍କର ଭାଲୁ ଲାଙ୍ଗୁଡ଼ ହାତରୁ ଖସାଇବାର ଏକ ସନାତନ ପଦ୍ଧତି ଅଛି । ସମସ୍ୟାକୁ ଏକ କମିଟିକୁ ସୁପୂର୍ଦ କରିବା ବା ବିଶେଷଜ୍ଞ ମାନଙ୍କର ମତାମତ ନେବାକୁ ପଠାଇଦେବା । ବୁଲୁ କ୍ଷେତ୍ରରେ ଉଭୟ ପଦ୍ଧତିକୁ ଏକ ସାଙ୍ଗରେ ମିଶାଇ ଦେଇ ଏକ ନୂଆ ଜିନିଷ ସୃଷ୍ଟି କରାଗଲା । ଇନଷ୍ଟିଚ୍ୟୁଟ୍ ଅଫ୍ ଏଭିଏସନ୍ ମେଡ଼ିସିନ୍ ବା ଉଡ୍ଡୟନ ଭେଷଜ ସଂସ୍ଥାରେ ଏକ ବିଶେଷଜ୍ଞ ସମିତି ଗଠନ କରାଯାଇ ବୁଲୁକୁ ପରୀକ୍ଷା କରିବାକୁ କୁହାହେଲା । କିନ୍ତୁ ଷାଠିଏ ମହଣ ଘିଅ ହେବ ନା ରାଧା ନାଚିବ । କମିଟିର ସଭ୍ୟମାନେ ଅତି କାର୍ଯ୍ୟବ୍ୟସ୍ତ । ତିନି ଜଣଙ୍କୁ ଏକାଠି କରିବା ପ୍ରାୟ ଅସମ୍ଭବ । ଧରନ୍ତୁ ଆପଣ ପହିଲା ଅଗଷ୍ଟ ଦିନ ଚେଷ୍ଟା କଲେ । ସେ ଦିନ ପ୍ରଫେସର ହୁନ୍ ବାଙ୍ଗାଲୋରରେ କିନ୍ତୁ ପ୍ରଫେସର ନରସିଂହମ୍ ଯାଇଛନ୍ତି ନିଉୟର୍କ ଏବଂ ପ୍ରଫେସର ତ୍ରିପାଠୀ ଦିଲ୍ଲୀ । ସେପ୍ଟେମ୍ବର ସାତ ଧରିଲେ ପ୍ରଫେସର ନରସିଂହମ୍ ମାଡ୍ରାସରେ, ପ୍ରଫେସର ତ୍ରିପାଠୀ ଯାଇଛନ୍ତି ବମ୍ବେ ଓ ପ୍ରଫେସର ହୁନ୍ ଚଣ୍ଡିଗଡ଼ । ଏଣୁ ବୁଲୁକୁ ତାରିଖ ମିଳୁନାହିଁ । ଶେଷରେ ତାରିଖ ମିଳିଲା ଓ ବୁଲୁର ପରୀକ୍ଷା ହେଲା । ବର୍ତ୍ତମାନ ବୁଲୁ ଗବେଷଣାକାରୀମାନଙ୍କ ହାତରେ କଣ୍ଢେଇ । କିଏ ତାକୁ ରେଡ଼ିଓଧର୍ମୀ ଆଇସୋଟୋପର ଇଂଜେକ୍ସନ ଦେଲାଣି ତ କିଏ ତା ଧମନୀ ଭିତରେ ଏକ ସରୁ ତାର ଭରତି କରି କଣ ସବୁ ସୃଷ୍ଟି ଛଡ଼ା ପରୀକ୍ଷା ଆରମ୍ଭ କଲାଣି । ବର୍ତ୍ତମାନ ସେ ପ୍ରତି ମାସରେ ଏହି ସଂସ୍ଥାକୁ ଦଉଡ଼ି ଦଉଡ଼ି ହଇରାଣ ହୋଇଗଲାଣି । ମନେ ମନେ ସ୍ଥିର କଲାଣି ଯେ ଏପରି ହଲାପଟା ହେବାଠାରୁ ଗସ୍ତଖର୍ଚ୍ଚ ବିଲ ପାସ କରିବା ଭଲ । ଏହି ସଂସ୍ଥା ଦକ୍ଷିଣ ଭାରତରେ । ଏଥର ବୁଲୁ ସ୍ଥିର କଲା ଯେ ସେ ଭେଲାଙ୍କାନୀ ତୀର୍ଥ କରିବାକୁ ଯିବ । ଭେଲାଙ୍କାନୀ ତାମିଲନାଡୁରେ । କିମ୍ବଦନ୍ତୀ ଯେ ପ୍ରଭୁ ଯିଶୁଙ୍କ ମା ମେରୀ ପୃଥିବୀର ଆଠଟା ସ୍ଥାନରେ ସ୍ୱର୍ଗରୁ ଆସି ଦେଖା ଦେଇ ଦୁଃଖୀମାନଙ୍କ କଷ୍ଟ ଦୂର କରିଛନ୍ତି । ସେଥିରୁ ଏକ ସ୍ଥାନ ଭେଲାଙ୍କାନୀ ଏବଂ ସେଠି ପ୍ରାର୍ଥନା କଲେ କୁଆଡେ ସମସ୍ତ ଦୁଃଖ ଦୂର ହୁଏ । କଥାଟା ସ୍ତ୍ରୀଠାରୁ ଲୁଚାଇ ରଖିଲା । କାରଣ ଧର୍ମପ୍ରାଣା ମହିଳା ନିଶ୍ଚୟ ମା ମେରୀଙ୍କ ଦରବାରକୁ ଯିବାକୁ ଜିଦି କରିବେ । ଏବଂ ବୁଲୁ କଥାରେ, 'ମୁଁ ଚାହିଁବି ମେଡ଼ିକାଲ ପାସ ହୋଇଯାଏ ଓ ପୁଣି ଡିଏଁ । ସ୍ତ୍ରୀ ଚାହିଁବେ ମୁଁ ଟେବୁଲରେ ଭଦ୍ରଲୋକପରି କାମ କରେ । ଯେତେହେଲେ ମା ମେରୀ ବି ତ ସ୍ତ୍ରୀ ଲୋକ ! ନିଜ ଜାତି ପ୍ରତି ପକ୍ଷପାତ ନ କରିବେ ବୋଲି କେଉଁ ଗ୍ୟାରେଣ୍ଟି ?'

ସେ ଯାହାହେଉ, ମା ମେରୀ କୃପା କଲେ । ଏଥର ପରୀକ୍ଷା ବୋର୍ଡକୁ ଆସିଲେ ବାୟୁସେନାର ଚିକିତ୍ସା ବିଭାଗର ମୁଖ୍ୟ । ଶାଳପ୍ରାଂଶୁ ମହାଭୂଜ ଜାତୀୟ ବ୍ୟକ୍ତିତ୍ୱ । ସମସ୍ତ କାଗଜ ପତ୍ର ଦେଖି ସାରିଲା ପରେ ବୁଲୁକୁ ଡକାଇ ନାନା ରକମର ପ୍ରଶ୍ନ କଲେ । ତା'ପରେ ବୋର୍ଡର ସଦସ୍ୟମାନଙ୍କୁ ଡ଼ାକି ପଚାରିଲେ, 'ଏହି ଅଫିସରକୁ ଏପରି ଝୁଲାଉଛ କାହିଁକି ?'

ପ୍ରଫେସର ହୁନ୍ ସମସ୍ତ କାହାଣୀ ବର୍ଣ୍ଣନା କଲେ । ତା ଶୁଣି ସାରିଲା ପରେ ଏଆର ମାର୍ଶଲ୍ ପ୍ରଶ୍ନ କଲେ, 'ସମସ୍ତ ପରୀକ୍ଷାରୁ କଣ ଫଳ ହେଲା ?' ପ୍ରଫେସର ହୁନ କହିଲେ, 'ସାର୍, କୌଣସି ସୂତ୍ର ମିଳୁ ନାହିଁ । ସବୁ ଠିକ୍ ଚାଲୁଛି । କୌଣସି ରକମର ଅସୁବିଧା ନାହିଁ । ସବୁ ନର୍ମାଲ । ଅଥଚ ହୃଦୟଟା ଯେ କାହିଁକି ଧୀରେ ଧୀରେ ଚାଲୁଛି, ବୁଝି ହେଉନାହିଁ ।' ଏଥର ଏଆର ମାର୍ଶାଲ୍ କହିଲେ, 'ପ୍ରଫେସର, ଜୀବନରେ କଣ ତୁମେ ସବୁ ପ୍ରଶ୍ନର ଉତ୍ତର ପାଇଥାଅ ? ନାଁ ପାଇବା ସମ୍ଭବ ? ଏହି ହୃଦୟଟା ମଧ୍ୟ ସେହିପରି ପ୍ରଶ୍ନ । ତୁମେ ତୁମ ବିଜ୍ଞାନର ସମସ୍ତ ପରୀକ୍ଷା କରି ସାରିଲଣି । ସବୁଥିରେ ଏ ହୃଦୟଟା ପାଶ କଲା । ତା ପରେ ଯଦି ହୃଦୟଟା ଧୀରେ ଚାଲିଲା ତ ଚାଲୁ । ଯେତେଦିନ ଆୟୁ ଅଛି ସେ ବଞ୍ଚିବ । ଆମେ ଚାହିଁଲେ ମଧ ମାରି ପାରିବାନି । ଆମେ ଆମର କର୍ତ୍ତବ୍ୟ କଲୁ । ଆମ ବିଜ୍ଞାନ ଏ ପ୍ରଶ୍ନର ଉତ୍ତର ଦେଇ ପାରିଲା ନାହିଁ । ଏଣୁ ଏ ଅଫିସରକୁ ଫିଟ୍ କରିଦିଅ । ବହୁତ ଦିନ ଲଟକି ରହିଲାଣି । ଆଉ ରଖିବାଟା ଅନ୍ୟାୟ ।'

ବୁଲୁର ଗ୍ରହ କଟିଗଲା । ସେ ସଗର୍ବରେ ଆକାଶଛତା ବ୍ରାଞ୍ଚକୁ ଫେରି ଆସିଲା । ବର୍ତ୍ତମାନ ସେ ଆକାଶଛତା ସ୍କୁଲରେ ଅଧ୍ୟାପକ ଏବଂ ଏହି ବିଦ୍ୟା ଅର୍ଥାତ୍ ଆକାଶଛତା ଧରି ଡ଼େଇଁବାରେ ଆନ୍ତର୍ଜାତିକ ଖ୍ୟାତି ମଧ ଲାଭ କରିଛି । ସବୁ ମା ମେରୀ, ମା କାଳୀଙ୍କ କୃପା ।



# ଅମୃତ ଲଗ୍ନ

ଅକ୍ଷୟ ବାବୁ ରିଟାୟାର କରି ସାରି କଣ କରିବେ ବୋଲି ପ୍ରଥମେ ତ ବଡ଼ ଚିନ୍ତିତ ଥିଲେ । କିନ୍ତୁ ସମୟ ମଧ ତାର ସମାଧାନ କରିଦେଲା । ଅକ୍ଷୟ ବାବୁ ଅବିବାହିତ । ଦୁଇଟି ପୁତୁରାଙ୍କୁ ମଣିଷ କରିବାରେ ଅନେକ ସାହାଯ୍ୟ କରିଥିଲେ । ତାଙ୍କ ଭିତରୁ ଜଣକ ସହିତ ବେଶ ଘନିଷ୍ଠତା । ଅନ୍ୟଟିର ସହିତ ସମ୍ପର୍କ ଏତେ ନିବିଡ଼ ନହେଲେ ମଧ ବେଶ ଭଲ । କିନ୍ତୁ ପୁତୁରାମାନଙ୍କ ପାଖରେ ତ ସବୁବେଳେ ରହି ହେବ ନାହିଁ । ଅକ୍ଷୟ ବାବୁ ଜୀବନଟା ଯାକ ଏକୁଟିଆ ରହିବାରୁ ତାଙ୍କ ବ୍ୟକ୍ତିତ୍ୱରେ ଏକ ସ୍ୱୟଂସମ୍ପୂର୍ଣ୍ଣତା ଓ ଏକାକୀତ୍ୱ ଆସିଯାଇଛି । ଏଣୁ କାହାଘରେ ବେଶିଦିନ ରହିପାରିବେ ନାହିଁ । ସେ ନିଜର ସମୟ ଓ ଶକ୍ତିର ବ୍ୟବହାର କରିବାକୁ ଯାଇ ବର୍ତ୍ତମାନ ଏକ ଆଦିବାସୀ ସେବା ସଂସ୍ଥାନରେ ଯୋଗ ଦେଇଛନ୍ତି । ସାଧାରଣତଃ ଗୁଣପୁରରେ ଥାଆନ୍ତି । ହଠାତ୍ ଇଚ୍ଛା ହେଲା କିଛି ଦିନ ଜଗନ୍ନାଥଙ୍କ ପାଖରେ ରହିବେ । ଏଣୁ ପୁରୀ ଆସିଲେ । ଚାକିରୀ ଜୀବନରେ ପରିଚିତ ଏକ ମାରୁଆଡ଼ି ବ୍ୟବସାୟୀ ପୁରୀରେ ଏକ ଧର୍ମଶାଳା ତିଆରି କରିଥିଲେ । ଏହିଠାରେ ଗୋଟିଏ ପରିଷ୍କାର ପରିଚ୍ଛନ୍ନ ବଖରାର ବ୍ୟବସ୍ଥା ହେଲା । ଅକ୍ଷୟ ବାବୁ ବେଶ ସୁସ୍ଥ । ପ୍ରତିଦିନ ସକାଳୁ ନିତ୍ୟକର୍ମ ସାରି ମନ୍ଦିରରେ ପ୍ରାୟ ଦୁଇଘଣ୍ଟା କଟାନ୍ତି । ସନ୍ଧ୍ୟା ବେଳୁ ପ୍ରାୟ ଦୁଇଘଣ୍ଟା ସମୁଦ୍ର କୂଳ ଓ ତାପରେ ଘଣ୍ଟାଏ ଖଣ୍ଡେ ମନ୍ଦିର ବା ରାମକୃଷ୍ଣ ମିଶନ । ମୋଟାମୋଟି ବେଶ ଲାଗୁଛି । ତାର ପ୍ରଧାନ କାରଣ ସେ ଜାଣନ୍ତି ଯେ ସେ ଏଠି ରହିବେ ନାହିଁ । କିଛି ଦିନ ପରେ ପୁଣି ନିଜ କାମକୁ ଗୁଣପୁର ଫେରିଯିବେ । ପୁରୀରେ ଏ ସମୟଟା ତାଙ୍କର ଛୁଟି ।

ସେଦିନ ବେଡ଼ା ବୁଲି ବଟଗଣେଶଙ୍କ ପାଖରେ ପହଞ୍ଚିଲେ । ସବୁଦିନ ଆସନ୍ତି । ଗଣେଶ ମନ୍ଦିର ଅକ୍ଷୟ ବାବୁ ସବୁବେଳେ ଭଲ ପାଆନ୍ତି । ପ୍ରଥମତଃ ତାଙ୍କୁ ଭଲ ଲାଗେ ଗଣେଶଙ୍କ ରୂପ । ମାନବ ଜଗତ ଓ ଜନ୍ତୁଜଗତର ଅପରୂପ ସମାବେଶ । ଦେବତା କଣ ଖାଲି ମନୁଷ୍ୟଙ୍କର ? ପୁଣି ଏପରି ଏକ ଜୀବକୁ ନିଜର ବାହନ ହିସାବରେ ସମ୍ମାନ ଦେଇଛନ୍ତି ଯାହାକି ଅନ୍ୟମାନଙ୍କ ଚକ୍ଷୁରେ ହେୟ । ଅର୍ଥାତ୍ ମୂଷା । ତା ଛଡ଼ା ବହୁ ଅନ୍ୟ କଥା ଅଛି ।

ଅନେକ କାରଣରୁ ତାଙ୍କର ଗଣେଶଙ୍କ ପ୍ରତି ଭକ୍ତି । ଏଣୁ ବଟଗଣେଶଙ୍କ ଠାରେ କିଛି ସମୟ କଟାନ୍ତି । ଦୀପବିକାଳିଠାରୁ ଦୀପ କିଣୁଥିଲା ବେଳେ ଜଣେ ମହିଳା ଆସି ପହଞ୍ଚିଲେ । ବୟସ ପାଖାପାଖି ପଞ୍ଚାବନ ଛପନ ହେବ । ନାଲି ଧଡ଼ି ଥିବା ଧଳା ଶାଢି ପିନ୍ଧିଛନ୍ତି । ଗୋରା ଏବଂ ଏ ବୟସରେ ଯେପରି ହେବା କଥା, ମୋଟା ନହେଲେ ମଧ ପୂରିଥିଲା ଦେହ । ଯୌବନରେ ଥିଲା ରୂପ । ବୟସ ବଢି ସେ ରୂପର ମାଦକତା ଅବଶ୍ୟ ନାହିଁ । କିନ୍ତୁ ତାହା ଏକ ସ୍ନିଗ୍ଧତାରେ ପରିଣତ ହୋଇଛି । ଦୁହେଁ ପରସ୍ପରକୁ ଚାହିଁଲେ । ତାପରେ ଉଭୟେ ଦୀପ ବସାଇବାକୁ ଗଲେ । ମହିଳା ଆବୃତ୍ତି କରିବା ଆରମ୍ଭ କଲେ ।

'ନମୋ ଗଣେଶ ବିଘ୍ନେଶ ଗିରିଜାନନ୍ଦନ ପ୍ରଭୋ' ।

ହଠାତ୍ ଅକ୍ଷୟ ବାବୁ ଚମକି ପଡ଼ିଲେ । ଏ କାହାର ସ୍ୱର । ଏ କେଉଁ ଅପାସୋରା ଗୀତ । ଅକ୍ଷୟ ବାବୁଙ୍କର ମନର ସାତତାଳ ପାଣି ଭିତରେ ଶୋଇଥିବା ରାଜକନ୍ୟା ଉଠି ବସିଲା । ପୁଣି ଥରେ ମହିଳାଙ୍କୁ ଲକ୍ଷ୍ୟ କରି ଚାହିଁଲେ । ହଁ ସେହିତ । ସାହସ କରି ପଚାରିଲେ 'ନମସ୍କାର, ଆପଣ ଚିହ୍ନା ଚିହ୍ନା ଲାଗୁଛନ୍ତି । ଆପଣଙ୍କ ବାପା କଣ ଭଦ୍ରକରେ ସବ୍‌ରେଜିଷ୍ଟ୍ରାର ଥିଲେ ?'

ଭଦ୍ର ମହିଳା ଆଶ୍ଚର୍ଯ୍ୟ ହୋଇ ଅକ୍ଷୟବାବୁଙ୍କୁ ଚାହିଁଲେ । ତାପରେ ଛେପ ଢୋକି କହିଲେ, 'ହଁ, କିନ୍ତୁ, କିନ୍ତୁ ଆପଣ..... ଆପଣ କଣ ହେଡ୍‌ମାଷ୍ଟରଙ୍କ ପୁଅ ଅକ୍ଷୟ ?'

ଅକ୍ଷୟବାବୁ କହିଲେ, 'ହଁ । ତୁମେ ନିଶ୍ଚୟ ସରଳା । କିନ୍ତୁ ମୋତେ ଚିହ୍ନିଲ କିପରି ? ମୁଁ ତ ବର୍ତ୍ତମାନ ଚନ୍ଦାମୁଣ୍ଡିଆ ବୁଢା' । ମହିଳା, 'ସମସ୍ତଙ୍କର ବୟସ ବଢିଛି । ତୁମକୁ ଚିହ୍ନିଲି ତୁମ ଗାଲ ଉପରେ କଟାଦାଗ ଦେଖି । ମନେ ଅଛି ନା, ଆମେ ତୁମକୁ ଡ଼ାକୁଥିଲୁ ବିଭୂତି ଭୂଷଣ ଗାଲେସିକଟା ବୋଲି । ଆଚ୍ଛା ମୋତେ ଚିହ୍ନିଲ କିପରି ?' ଅକ୍ଷୟ 'ବୁଝିପାରୁନ, ତୁମ ସ୍ୱରରୁ, ତୁମ ମୁହଁରୁ ।'

ଦୁଇଜଣ ଯାକ ବାହାରି ପବନ ହେଉଥିବା ଖୋଲା ଯାଗାରେ ଯାଇ ବସିଲେ ।

ଅକ୍ଷୟ : 'ସରଳା, କେତେ ଦିନ ହେଲା । ପ୍ରାୟ ପଇଁତିରିଶ ବର୍ଷ ହେଲା ନା ? ତୁମର କଥା କୁହ । ମାଙ୍କଠାରୁ ଶୁଣିଥିଲି ଯେ ମୁଁ ଟ୍ରେନିଂରେ ଥିବା ସମୟରେ ତୁମର ବାହାଘର ହେଲା । ତୁମ ସ୍ୱାମୀ ଓକିଲାତି କରୁଥିଲେ ବୋଲି ଶୁଣିଥିଲି । ବର୍ତ୍ତମାନ ମଧ ପ୍ରାକ୍ଟିସ କରୁଛନ୍ତି ନା ଜଜ ହୋଇଗଲେଣି । ଜୀବନରେ ତ ସୁଖ ଦୁଃଖ ଦୁଇଟା କଥା । ତେବେ ତୁମେ ଏଇଲେ ସୁଖର କଥା ହିଁ କହ ।'

ସରଳା : 'ଅକ୍ଷୟ ତୁମେ କଣ ସେହି ଆଗଭଳିଆ ସବୁ କଥାକୁ କଳା ଓ ଧଳାରେ ଦେଖୁଛ । ଧୂସର କଣ ରଙ୍ଗ ନୁହେଁ ? ସେପରି ଜୀବନର ସୁଖ ଓ ଦୁଃଖ ଛଡ଼ା ଆଉ ଗୋଟିଏ ଅବସ୍ଥା ହେଉଛି ଗତାନୁଗତିକ । ସୁଖ ବା ଦୁଃଖ ପ୍ରକୃତରେ ଜୀବନରେ କେତେ ?'

ଅକ୍ଷୟ : 'ତୁମେ ତ କଣ ବୁଦ୍ଧଦେବଙ୍କ ଗୁରୁ ହେବାକୁ ବାହାରିଲଣି । ବର୍ତ୍ତମାନ ଦର୍ଶନ ଶାସ୍ତ୍ର ବାଦଦେଇ ସେ ସବୁ ଖବର ବିଷୟରେ କହ ଯାହା ଏତେ ଦିନ ପରେ ଦେଖା ହେଲେ କହିବାକୁ ହୁଏ । ଘର, ବର, ପୁଅ, ଝିଅ ଇତ୍ୟାଦି ।'

ସରଳା : 'ଦେଖ, ଏହିତ ଧୂସର ପୃଥିବୀ । ମୋଟାମୋଟି ଠିକ୍ ଅଛି । ସେ କଟକରେ ପ୍ରାକ୍ଟିସ ଚାଲୁ ରଖିଛନ୍ତି । ଜଜ ହେବାର ତାଙ୍କର ତିଳେମାତ୍ର ଆଗ୍ରହ ନାହିଁ । ପ୍ରାକ୍ଟିସର ପଇସା କାହିଁ ଓ ଜଜ୍‌ର ଦରମା କାହିଁ ? ତା ଛଡ଼ା ସେଠି ତ ସମସ୍ତ ରୋଜଗାର ଉପରେ ଇନ୍‌କମଟାକ୍ସ ଦେବାକୁ ପଡ଼ିବ ।'

ଅକ୍ଷୟ : 'ସରଳା, ତୁମେ କିପରି ଏତେ ସିନିକ୍ ହେଲ ? ଆଉ ପିଲେ' ?

ସରଳା : 'ମୁଁ କାହିଁକି ସିନିକ୍, ଏକଥା ମୁଁ ମଧ କହି ପାରିବି ନାହିଁ । ଛାଡ଼ ଦୁଇ ଝିଅ, ତିନି ପୁଅ । ବଡ଼ ପୁଅ ଇଲେକ୍ଟ୍ରିକାଲ ଇଂଜିନିୟର । ଏଇଲେ ନାଲ୍‌କୋରେ ଅଛି । ମଝିଆଁ ତା ବାପାଙ୍କର ଜୁନିୟର । ସଭା ସାନ ଏମ୍.ଫିଲ କରୁଛି । ଗୋଟିଏ ଝିଅ ବାହା କରିଛି । ଜୋଇଁ ରାଉରକେଲାରେ ଡାକ୍ତର । ବଡ଼ପୁଅର ମଧ ବାହାଘର ହୋଇଛି ଗତବର୍ଷ । ଆଉ ଝିଅଟି ବି.ଏ. କରୁଛି । ଏଣୁ ବୁଝିପାରୁଥିବ ମୁଁ ପାଇକାରି ଦରରେ ବରକନ୍ୟା ଖୋଜୁଛି । ତୁମ ଆଖିରେ କିଛି ଅଛି ?''

ଅକ୍ଷୟ :- 'ସେ ବିଷୟରେ ମୁଁ କାହିଁକି ଭାବିବି ?'

ସରଳା : 'କାହିଁକି, ତା ତ ସଂସାରରେ ସମସ୍ତଙ୍କୁ କରିବାକୁ ହୁଏ । ଆଚ୍ଛା ତୁମ ନିଜ ଖବର କଣ । ପିଲାଛୁଆ ?'

ଅକ୍ଷୟ : 'ନା ସରଳା, ସେ ଜଂଜାଳ ନାହିଁ । ମୁଁ ଅବିବାହିତ ।'

ସରଳା : 'ଏ କଣ କହୁଛ ।'

ଅକ୍ଷୟ : 'ନା ସରଳା, ସତକଥା । ମୁଁ ଆଶା ରଖିଥିଲି ଓ ତୁମକୁ କଥା ମଧ ଦେଇଥିଲି ଯେ ମୋର ଟ୍ରେନିଂ ପରେ ତୁମକୁ ବାହା ହେବାର ପ୍ରସ୍ତାବ ବାପାଙ୍କ ଜରିଆରେ ପଠାଇବି । କିନ୍ତୁ ଟ୍ରେନିଂ ଛୁଟି ସମୟରେ ଘରକୁ ଆସି ଶୁଣିଲି ଯେ ତୁମେ ମାଉସୀଘରକୁ ସମ୍ବଲପୁର ଯାଇଛ । ଆମେ ତ ଧରା ପଡ଼ିବା ଭୟରେ ପରସ୍ପରକୁ ଚିଠି ଲେଖୁ ନଥିଲୁ । ସେ ସମୟଟା କଲେଜର ଛୁଟି ନୁହେଁ । ବରଂ ହାଫଇଅର୍‌ଲି ପରୀକ୍ଷା ସମୟ । ମୁଁ ଖୁବ୍ ନିଶ୍ଚିତ ଥିଲି ଯେ ତୁମକୁ ଦେଖିବି । କିନ୍ତୁ ସେ ସମୟରେ ପରୀକ୍ଷା ଛାଡି ତୁମର ମାଉସୀ ଘରକୁ ଯିବାର ଅର୍ଥ ଆଉ କଣ ହୋଇପାରେ । ମୋ ଠାରୁ ଆଡେଇଯିବାର ଏକ ସୁସଭ୍ୟ ପଦ୍ଧତି । ଏଣୁ ମୁଁ ଆଡେଇଗଲି । କିନ୍ତୁ ତୁମକୁ ମୋ ମନରେ ଏପରି ସ୍ଥାନ ଦେଇସାରିଥିଲି ଯେ ଅନ୍ୟ କାହାକୁ ଆଉ ସେ ସ୍ଥାନ ଦେଇ ପାରିଲି ନାହିଁ । ଘରେ ବହୁ ଚାପ ପଡ଼ିଲା ବାହା ହେବା ପାଇଁ ।

ତେଣୁ ମୁଁ କହିଲି ଯେ ଦୁଇପୁତୁରା ମଣିଷ ହୋଇ ସାରିଲେ ମୁଁ ବାହାହେବି । ତାଙ୍କୁ ମଣିଷ କର୍‌ କରୁ ଗଳିଶ ଟପିଗଲା । ଆଉ କେହି ଜୋର ଦେଲେ ନାହିଁ ।'

ସରଳା : 'ତମେ କଣ କଲ । ନିଜକୁ ଧ୍ୱଂସ କରିଦେଲ ?'

ଅକ୍ଷୟ : 'ଧ୍ୱଂସ ଆଉ କଣ କଲି । ଆଉ ଜଣେ ସ୍ତ୍ରୀ ବାହା ହୋଇଥାନ୍ତି । କେତେଟା ଛୁଆ ହୋଇଥାନ୍ତେ । କିନ୍ତୁ ତୁମକୁ ମୁଁ ଦେଖିଥିଲି ଉଷାର ପ୍ରଥମ ଆଲୋକ ପରି । ତା ତ ଆଉ କିଏ ହୋଇପାରନ୍ତାନି । ଏଣୁ ମୁଁ ନାଟକ ରଚନା କରିନାହିଁ ।'

ସରଳା : 'ତା ହେଲେ କଣ ମୁଁ ନାଟକ କଲି ? ତୁମେ କଣ ଭାବିପାରିଲ ନାହିଁ ଯେ ମୁଁ ସମ୍ବଲପୁର ନିଜ ଇଚ୍ଛାରେ ଯାଇନଥିଲି । ତୁମର ଛୁଟିରେ ଆସିବାର ସମୟ ଜାଣି ଯୋର କରି ମୋତେ ପଠାଇ ଦିଆଯାଇ ଥିଲା ।'

ଅକ୍ଷୟ : 'ମୋତେ କୌଣସି ମତେ ଖବର ଦେଇ ପାରିଲନି ?'

ସରଳା : 'କିପରି ? ମୋତେ ପଦେ ପଦେ ନଜରରେ ରଖା ଯାଇଥିଲା । ତୁମେ ମଧ ଜାଣ ଯେ ଆମର ସମ୍ପର୍କ ମୋର ବାପା ମା ବା ତମର ବାପା ମା କାହାରି ମନକୁ ପାଇ ନଥିଲା । ସନ୍ଦେହ ଉଭୟଙ୍କର ଥିଲା । ତାପରେ ଯେତେବେଳେ ତୁମେ ବାହାଘର ଲାଗି କୌଣସି ରକମ ଆଗେଇଲନି ସେତେବେଳେ ମୋ ଭିତରେ କଣ ହେଲା ତା ଏବେଲେ କହି ଲାଭ କଣ ? କିନ୍ତୁ ମୁଁ ଝିଅ ପିଲା । ତୁମ ପରି ଅବିବାହିତ ରହିଯିବା ସମ୍ଭବ ହେଲାନି । ବାପା ମାଙ୍କ ଇଚ୍ଛା ଆଗରେ ଆତ୍ମସମର୍ପଣ କରିବାକୁ ହେଲା ।'

ଅକ୍ଷୟ : 'ସରଳା, ସ୍ୱୀକାର କରୁଛି ତୁମେ ନିଜ ତରଫରୁ କୌଣସି ବିଦ୍ରୋହ କରି ପାରିନଥାନ୍ତ । ଆମ ସମାଜରେ ସ୍ତ୍ରୀଲୋକ ତାହା କରିପାରବ ନାହିଁ । ପ୍ରକୃତ କଥା ହେଲା ଆମେ ଦୁହେଁ ଭୁଲ ବୁଝାମଣାର ଶିକାର ହେଲୁ । ଆଚ୍ଛା ସରଳା, ଯଦି ମୁଁ ସେ ସମୟରେ ଡ଼ାକି ଥାଆନ୍ତି, ତାହେଲେ କ'ଣ ତୁମେ ଘରୁ ପଳେଇ ଆସି ପାରିଥାନ୍ତ ?'

ସରଳା ଦେବୀଙ୍କର କଣ୍ଠସ୍ୱର ଉତ୍ତେଜିତ ହୋଇ ପଡ଼ିଲା, 'ଅକ୍ଷୟ, ତୁମେ ଏତିକି ବୁଝିପାରିଲ ନାହିଁ, ମୁଁ ଏହି ଅମୃତଲଗ୍ନକୁ ଚାହିଁ ଚାହିଁ ରହିଗଲି । ଆଶ୍ଚର୍ଯ୍ୟ ଯେ ତୁମେ ପଚାରିଲ । ଏଥିରେ କ'ଣ ସନ୍ଦେହ ଥିଲା ?'

ଅକ୍ଷୟ : 'ଆଜି ଧନ୍ୟ ହେଲି ସରଳା । ଆଜି ମୋର କୁମାରତ୍ୱର ସଫଳତା । ଭାଗ୍ୟରେ ନଥିଲା । ଏଣୁ ଅମୃତର ପାତ୍ର ହାତ ପାଖରେ ଥାଇ ମଧ ଆମେ ଅମୃତ ପିଇ ପାରିଲୁ ନାହିଁ । ତେବେ ଆଜି ଆମ ଭିତରେ ପଇଁତିରିଶ ବର୍ଷର ଧୂଳି ମଳି ଧୋଇ ହୋଇଗଲା । ଆଜି ଜାଣିଲୁ ଯେ କେହି କାହାରି ପ୍ରତି ବିଶ୍ୱାସଘାତକତା କରିନାହୁଁ ।

ଭାଗ୍ୟ ଓ ହୁଏତ ଠିକ୍ ସମୟରେ ସାହସର ଅଭାବ ଆମର ବର୍ତ୍ତମାନ ଅବସ୍ଥା ପାଇଁ ଦାୟୀ ।'

ସରଳା : 'ତୁମେ କଣ ପୁରୀରେ ରହୁଛ ?'

ଅକ୍ଷୟ : 'ନା ସରଳା, ରିଟାୟାର କରି ମୁଁ ଏକ ଆଦିବାସୀ କଲ୍ୟାଣ ସଂସ୍ଥାରେ ଯୋଗ ଦେଇଛି । ଗୁଣପୁରରେ ରହେ । କଣ ମନ ହେଲା ଜଗନ୍ନାଥଙ୍କୁ ଦର୍ଶନ କରିବା ଲାଗି ଏଠିକୁ ଧାଇଁ ଆସିଥିଲି । ଏବେ ବୁଝିଛି ଏହା ଜଗନ୍ନାଥଙ୍କ ଦୟା, ଭାଗ୍ୟର ଖେଳ । ଥରେ ଅମୃତର ପାତ୍ର ଆସିଥିଲା । ଧରି ପାରିଲି ନାହିଁ । ବର୍ତ୍ତମାନ ଜଗନ୍ନାଥ ହିଁ ଏହି ଅମୃତରୁ ଟିକିଏ ମୁହଁରେ ଲଗାଇଦେଲେ । ମୁଁ ଧନ୍ୟ । କାଲି ଗୁଣପୁର ଫେରି ଯାଉଛି ।'

ସରଳା : 'ମୁଁ ମଧ ଦୁଇଦିନ ପରେ କଟକ ଫେରିଯିବି । ପୁଣି ଥରେ ଲୁଚେଇ ଲୁଚେଇ କାନ୍ଦିବା କପାଳରେ ଅଛି ।'

ଅକ୍ଷୟ : 'ଏଥିଲାଗି କଣ ତୁମେ ଦୁଃଖିତ ସରଳା ?'

ସରଳା : 'ନା, ନା, ଏହି କାନ୍ଦରେ ତ ମୋର ସାର୍ଥକତା ।'



# ମକୁବାବୁଙ୍କ ଗୁପ୍ତଗାଥା

ମକୁବାବୁ ଜଣେ ସାଧାରଣ ଭଦ୍ରଲୋକ । ଆଉ ଦଶ ଜଣଙ୍କ ଭଳିଆ । ବରଂ କହିପାରନ୍ତି ଆଉ ଦଶଜଣଙ୍କଠାରୁ ମଧ ସାଧାରଣ । ନିରୀହ ସାଧାରଣ ଲୋକ । ଚେହେରା ବା ବ୍ୟବହାର ବା ଜୀବନଦର୍ଶନ ଇତ୍ୟାଦିରେ ଏପରି କିଛି ନାହିଁ ଯାହାକି ଆପଣ ଲକ୍ଷ୍ୟ କରି ପାରିବେ । ଏଣୁ ତାଙ୍କ ଆଡକୁ କେହି ନଜର ଦିଅନ୍ତି ନାହିଁ । ଏପରିକି ତାଙ୍କ ସ୍ତ୍ରୀ ମଧ ତାଙ୍କୁ ଖୁଣିବାକୁ ଭୁଲିଯାଇ ଥାଆନ୍ତି । ତେବେ ମକୁବାବୁ ମଧ ମନୁଷ୍ୟ । ଅମୃତସ୍ୟ ପୁତ୍ର । ତାଙ୍କର ଗୋଟିଏ ଗୁଣ ଥିଲା । ସେ ଜାତସ୍ମର । ତେବେ ତାଙ୍କ ପୂର୍ବଜନ୍ମର କଥା ସେ କୌଣସି ଡ଼ାକ୍ତର ବା ମନୋବିଜ୍ଞାନ ପ୍ରଫେସରଙ୍କୁ କହି ନାହାନ୍ତି । ଏଣୁ ତା କୌଣସି ଖବର କାଗଜରେ ଫଟୋଇ କରି ପ୍ରକାଶ କରାଯାଇନାହିଁ । ଏପରିକି ବୋଧହୁଏ ମକୁବାବୁ ମଧ ତାଙ୍କର ଏ ଗୁଣ ବିଷୟରେ କ୍ୱଚିତ ସଚେତ ଥାଆନ୍ତି ।

ମକୁବାବୁ ସକାଳୁ ବାହାରିଛନ୍ତି ବଜାରକୁ । ସାଧାରଣତଃ ତାଙ୍କୁ ଶ୍ରୀମତୀ ଏକ ଲମ୍ବା ତାଲିକା ଦେଇଥାନ୍ତି ଯେଉଥିରୁ ସେ ପ୍ରାୟ ଏକ ତୃତୀୟାଂଶ ଭୁଲି ଯାଆନ୍ତି । ତେବେ ଜରୁରୀ ଜିନିଷ ଭୁଲନ୍ତି ନାହିଁ । ତାଙ୍କ ମନ ଭିତରେ ଥିବା ଜାତସ୍ମର କମ୍ପ୍ୟୁଟର ତାଙ୍କୁ ମନେ ପକାଇଦିଏ ।

ମାର୍କେଟ ପାଖରେ ନାଳଟା ଖୋଳା ହୋଇଛି । ମାଟି ଗୁଡ଼ାକ ଏକ ଛୋଟ ମୁଣ୍ଡିଆ ପରି ଗଦା ହୋଇଛି । ସେଠି ମକୁବାବୁ ଟିକିଏ ଝୁଣ୍ଟି ପଡ଼ିଲେ । ତା ପରେ ପଟ ପରିବର୍ତ୍ତନ ।.... ଛୋଟ ଛୋଟ ମୁଣ୍ଡିଆ । ତା ପରେ ବୁଦବୁଦିକିଆ ଜଙ୍ଗଲ । ଏକ ତୀର୍ଥଯାତ୍ରୀ ଦଳ ବୁନ୍ଦେଲଖଣ୍ଡ ଦେଇ ଦକ୍ଷିଣକୁ ଯାଉଛି । ସେମାନେ ରକ୍ଷକ ହିସାବରେ ସାଙ୍ଗରେ ନେଇଛନ୍ତି ମୁକୁନ୍ଦ ସିଂହଙ୍କ ଅଧୀନରେ ଦଶଜଣ ଗୋଡ଼ାସଓ୍ୱାର । ମୁକୁନ୍ଦ ସିଂହ ଓ ତାଙ୍କ ସାଥିମାନଙ୍କର ଦିଗ୍‌ବଳୟ ଉପରେ ତୀକ୍ଷ୍ଣ ଦୃଷ୍ଟି । କେଉଁଠି ପିଣ୍ଡାରୀ ଦସ୍ୟୁଦଳ, ବର୍ଗୀ ବା ଅନ୍ୟ ଦସ୍ୟୁ ଦେଖା ଯାଇପାରନ୍ତି । ମୁକୁନ୍ଦ ସିଂହ ଓ ତାଙ୍କ ଦଳର କାମ ହେଲା ପ୍ରାଣ ଦେଇ ମଧ ଏ ଯାତ୍ରୀଦଳକୁ ରକ୍ଷା କରିବା । ସମୟ ମଧାହ୍ନର ଟିକିଏ ପରେ । ଅସହ୍ୟ ଗରମ । ହଠାତ୍ ମେଘ ସିଂହ ତା ଘୋଡ଼ାକୁ ମୁକୁନ୍ଦ ସିଂହଙ୍କ ପାଖକୁ ଲଗାଇ ଆଣି ଧୀରେ ଧୀରେ କହିଲା ସରଦାର ବାଯେଁ

ପହାଡ଼ି ପର ଦେଖୋ । ଦୁଶମନ୍ ମାଲୁମ ହୋତା ହୈ । ସାଙ୍ଗେ ସାଙ୍ଗେ ମୁକୁନ୍ଦ ସିଂହ ଓ ମେଘ ସିଂହ ଘୋଡ଼ା ଛୁଟାଇ ଦେଲେ । ଏକ ମୁଣ୍ଡିଆ ଉପରକୁ ଉଠି ଠିକ୍ ଉପର ଆଗରୁ ଘୋଡ଼ା ରୋକି ଓହ୍ଲାଇ ଛୁଟାଇ ଦେଲେ । ପିଠି ଆଡକୁ ଆକାଶ ଥିଲେ ଦୁଶମନ ଦେଖି ପକେଇବ । ବୁଦା ଭିତରୁ ଚାହିଁ ଦେଖିଲେ ଦୁଇଜଣ ଘୋଡାସବାର ମୁଣ୍ଡିଆରୁ ତଳକୁ ଯାଉଛନ୍ତି । ଏ ନିଶ୍ଚୟ ଦୁଶମନର ଲୋକ । ଶିକାର ଠଉର କରିବାକୁ ଆସିଛନ୍ତି । ଏମାନଙ୍କୁ ରୋକିବାକୁ ହେବ । ନହେଲେ ଏମାନେ ଫେରିଯାଇ ତାଙ୍କ ଛାଉଣିରେ ଖବର ଦେଲେ ଆଜି ରାତିରେ ଆମ କାମ ସଫେଇ ହୋଇଯିବ । ଦୁଇଜଣ ଯାକ ଘୋଡ଼ା ଛୁଟେଇ ଦେଲେ । ବଣ ବଣ ଭିତରେ ଏକ ରାସ୍ତା ଅଛି । ଅଙ୍କ ବାଟ । ସେ ବାଟେ ଯାଇ ଅନ୍ୟ ଦୁଇଜଣ ଅଶ୍ୱାରୋହୀଙ୍କ ରାସ୍ତା ରୋକିଦେଲେ । ଅଶ୍ୱାରୋହୀ ଦୁଇଜଣ ମରାଠା ଜଣା ପଡୁଛନ୍ତି । ବର୍ଗୀଙ୍କ ଚର । ମୁକୁନ୍ଦ ସିଂହ ହାଙ୍କି ଦେଲେ ଖବରଦାର । ବର୍ଗୀ ସଓ୍ୱାର ବର୍ଛା ସମ୍ଭାଳି ଛୁଟି ଆସିଲା । ମୁକୁନ୍ଦ ସିଂହ ଏ ଖେଳ ଖୁବ୍ ଜାଣନ୍ତି । ତାଙ୍କ ଘୋଡ଼ୀ ଚମେଲୀ ମଧ ଓସ୍ତାଦ । ଶେଷ ମୁହୂର୍ତ୍ତରେ ଘୋଡା ଏପରି ବୁଲାଇଦେଲେ ଯେ ବାଁ ପଟେ ଧକ୍କା ହୋଇଗଲା ଏବଂ ବର୍ଗୀ ସଓ୍ୱାର ପଡିଗଲା । ମେଘ ସିଂହ ତିଆର । ସାଙ୍ଗେ ସାଙ୍ଗେ ତା ବନ୍ଧୁକର ଗୋଟିଏ ଗୁଳିରେ ବର୍ଗୀର କାମ ଖତମ । ଆରଟା ପଳାଇଲା । ବିପଦ ନାହିଁ କାରଣ ସେ ଯାଇ ଖବର ଦେବ ଯେ ଶିକାର ହୁସିଆର । ଡାକୁ ଯୋଦ୍ଧା ନୁହେଁ । ଲାଭ କ୍ଷତିର ପୂରା ହିସାବ କରେ । ଯଦି ଦେଖେ ଯେ ଶିକାର ହୁସିଆର ଓ ତା ସାଙ୍ଗରେ ଲାଗିଲେ ଦଳରୁ କାହାର ପ୍ରାଣହାନି ହେବାର ସମ୍ଭାବନା ବେଶି, ନ ହେଲେ ସେ ଶିକାର ସାଙ୍ଗେ ନ ଲାଗିବା ଭଲ । ଘୋଡ଼ା ବୁଲେଇଲା ବେଳକୁ ଲକ୍ଷ୍ୟ କଲେ କାନ୍ଧରୁ ରକ୍ତ ବୋହୁଛି । ବୋଧହୁଏ ବର୍ଗୀର ବର୍ଛାଟା ଲାଗିଯାଇ ଥିଲା । ମେଘ ସିଂହ ମଧ ଦେଖିସାରିଲାଣି । ସେ ଘୋଡ଼ାରୁ ଓହ୍ଲାଇ କିଛି ପତ୍ର ନେଇ ଆସିଲା । କହିଲା, ସରଦାର ଚୋଟ ପର ଲଗାଦୋ । ମୁକାମ ମେ ଦଓ୍ୱା ଲଗାଦୁଂଗା । ଦେଖିଲା ବେଳକୁ ବଣକଲରା ପତ୍ର ।..... ମକୁବାବୁଙ୍କର ଚେତନା ଆସିଗଲା । ହଁ ଗୃହିଣୀ କହିଥିଲେ କଲରା ଆଣିବାକୁ । ପିଲାଗୁଡ଼ାଙ୍କର କୃମି ହେଲାଣି, ମକୁବାବ ପରିବା ଧାଡିକୁ ବାହାରିଲେ ।

ମକୁବାବୁ ବଜାର ସାରି ଘରକୁ ବାହାରିଛନ୍ତି । କିନ୍ତୁ ମନେ ହେଉଛି କଣ ଗୋଟିଏ କିଣି ନାହାନ୍ତି । ନ ନେଇ କରି ଘରେ ପହଞ୍ଚିଲେ ତ ବକ୍ତୃତାଟା ବଢି ପାଣି ପରି ଯିବ ମାଡ଼ି । ଅଥଚ ମୋଟେ ମନେ ପଡୁନି । କ'ଣ କରାଯାଏ । ମକୁବାବୁ ଆମ୍ବଗଛ ତଳେ ଠିଆ ହୋଇ ଭାବିବା ଆରମ୍ଭ କଲେ ।.... ମୁକୁନ୍ଦ ପ୍ରସାଦ ଗୋରାପ ବାଲେଶ୍ୱର ବନ୍ଦର ଛାଡ଼ିବା ଚାରିଦିନ ହେଲାଣି । ଚାଉଳ, ପିତଳବାସନ ଓ ଅନ୍ୟାନ୍ୟ ତେଜରାତି ଜିନିଷ ନେଇ ବାହାରିଛି ଜାଭା ଦ୍ୱୀପର ବାଟାଭି ବନ୍ଦରକୁ । ଏଥର ମାଲିକ ଦୁର୍ଗାଦାସ ମହାପାତ୍ରେ ନିଜେ ବାହାରିଛନ୍ତି ।

ବାଟାଭି ବନ୍ଦରରେ କେତେକ ଅସୁଲପାତି ବହୁଦିନରୁ ପଡ଼ି ରହିଛି । ଆଗେ ସେଠି ଜଣେ ବଡ ବ୍ୟବସାୟୀ କୁସୁମଜୟଙ୍କ ସହିତ କାରବାର ହେଉଥିଲା । ତାଙ୍କର କାଳ ହୋଇଗଲା । ପୁଅମାନଙ୍କ ମଧ୍ୟରେ କନ୍ଦଳ ଲାଗି ସବୁ କାରବାର ଲଣ୍ଡଭଣ୍ଡ । ଏଣେ ସେଠି ଓଲନ୍ଦାଜ କମ୍ପାନି ତାର ଖଜଣା ମଧ୍ୟ ବଢ଼େଇ ଦେଇଛି । ଏସବୁ କାମ ନିଜେ ନଗଲେ ନୁହେଁ । ସାରେଙ୍ଗ ତଣ୍ଡେଲ କଣ ଏ ଦାୟିତ୍ୱ ତୁଲାଇ ପାରିବେ ? ସୁମାତ୍ରାର ମେଦାନ ବନ୍ଦର ଆହୁରି ଦଶଦିନ । ଉତ୍ତରରୁ କହାଲିଆ ପବନ ମାରୁଛି । ରସି ଆଗରେ ପବନ ସାଇଁ ସାଇଁ ଡାକୁଛି । ଅଝାଲ ଫୁଲି ଗୋରାପ ରାଜହଂସ ଭଳି ଗଲିଛି । ତେବେ ଦୁର୍ଗା ସାଆନ୍ତଙ୍କ ମନରେ ଶାନ୍ତି ନାହିଁ । ଆଜିକାଲି ଦରିଆରେ ପର୍ତ୍ତୁଗାଲୀ ଡକାୟତ ମାତିଛନ୍ତି । ତାଙ୍କ ଉତ୍ପାତରେ ତ ବ୍ୟବସାୟ ଠପ୍ ହେବାକୁ ବସିଲାଣି । ଏମାନଙ୍କ ନାଁ ହେଲା ବମ୍ବାଟିଆ । ଏଥର ଆଣିଛନ୍ତି ଅଲତାଫ ମିଆଁ ସାରେଙ୍ଗ ଓ ହରି ତଣ୍ଡେଲ । ଏମାନେ ତ ଦରିଆରେ ଗୋରାପକୁ ଏପରି ବିଛା ପରି ଚଳେଇବେ ଯେ ବମ୍ବାଟିଆର ତୋପର ଗୋଳା ସହଜରେ ବାଜି ପାରିବ ନାହିଁ । ଶେଷ ରକ୍ଷା ପାଇଁ ମଧ୍ୟ କିଛି ସାଙ୍ଗରେ ଅଛି । ନୌକା ଅମ୍ବିକା ଠାକୁରାଣୀ କିପର ସର୍ବଶୁଭରେ ପାର କରନ୍ତୁ । ଶୁଣାଯାଏ ସବୁଠୁଁ ବଡବମ୍ବାଟିଆ ନାଁ ଆଲୁକଖାରୁ (ALBUQURQUE) । ସତ ନାଁ କଣ କେଜାଣି । ଖଲାସିଙ୍କ ମୁହଁରୁ ଶୁଣିବା କଥା । ତା ପାଖରେ ଯେଉଁ କାରବେଲ (CARAVELLE) ବୋଇତ ଅଛି ତା ଦେହରେ ଷାଠିଏ ଅଝାଲ । ଗୋରାପ ଠାରୁ ତିନିଗୁଣ ବେଗରେ ଯାଏ । ହଠାତ୍ ମାସ୍ତୁଲ ଖଲାସି ହାକିଲା । ହୁଶିଆର, ଉତ୍ତରକୁ ବମ୍ବାଟିଆ ବୋଇତ ।

ସାଙ୍ଗେ ସାଙ୍ଗେ ସାଆନ୍ତେ ତଣ୍ଡେଲ ଓ ସୁଖାନିକୁ ଡ଼ାକି କାମ ବୁଝାଇଦେଲେ । ସବୁ ଖଲାସି ମାନଙ୍କୁ ହତିଆର ଓ ଦଶଜଣଙ୍କୁ ବନ୍ଧୁକ ଦେଲେ । ଏଥର ରଘୁ ମହାର୍ଥୀ ବାଣକାର ସାଙ୍ଗରେ ଆସିଛି । ସେ ସାଆନ୍ତଙ୍କ ଗୁପ୍ତ ଅସ୍ତ୍ର । ଖଲାସିମାନେ ତିଆର । ସେମାନେ ଭଲ କରି ଜାଣନ୍ତି ବମ୍ବାଟିଆଙ୍କ ହାତରେ ବନ୍ଧାହେବା ଠୁଁ ମୃତ୍ୟୁ ଭଲ । କାରଣ ବମ୍ବାଟିଆ ଯାହା କଷ୍ଟ ତ ଦେବେ । ଶେଷରେ କେଉଁ ମୁଲୁକରେ ନେଇ ଗୋଲାମ କରି ବିକିଦେବେ । ସମସ୍ତେ ଦରିଆ ଠାକୁରାଣୀ ଓ ବନ୍ଦର୍ ପୀରଙ୍କୁ ସୁମରଣା କରି ନିଜ ନିଜ କାମରେ ହାଜିର । ଏ ଆଡେ ଛଞ୍ଚାଣ ପାରା ଆଡ଼ିକି ଝପଟି ଆସିବା ପରି ବମ୍ବାଟିଆ ବୋଇତ ମୁକୁନ୍ଦପ୍ରସାଦ ଗୋରାପ ଆଡକୁ ଝପଟି ଆସୁଛି । ବମ୍ବାଟିଆ ଯେତେଦୂର ସମ୍ଭବ ଖଲାସିମାନଙ୍କୁ ଧରିବାର ଚେଷ୍ଟା କରନ୍ତି କାରଣ ଆଜିକାଲି ମସ୍କାଟ ବହରିନରେ ଗୋଲାମର ଦାମ ବଡ ଚଢ଼ା । ଆସ୍ତେ ଆସ୍ତେ ଦୁଇ ବୋଇତ ଲାଗି ଆସିଲା । ସାରେଙ୍ଗ ଡାକିଲା ଦରିଆ ଠାକୁରାଣୀ । ସମବେତ କଣ୍ଠରୁ ଉତ୍ତର ଆସିଲା ଜୟ ମା । ସାରେଙ୍ଗ ପୁଣି ଡ଼ାକିଲା ବନ୍ଦର ପୀର । ସମବେତ କଣ୍ଠରୁ ଉତ୍ତର ଦେଲେ ସାହେବ ସଲାମତ୍ । ହଠାତ୍ ସାଆନ୍ତେ ହାଙ୍କିଲେ-ମହାର୍ଥୀ, ଉତ୍ତର ଆସିଲା , ତିଆର । ସାଆନ୍ତେ ପୁଣି ହାଙ୍କିଲେ, ଲଗା । ତା ପରେ ଏ ଭୟଙ୍କର ସୁ ସୁ

ଶବ୍ଦ । ଗୋଟାକ ପରେ ଗୋଟେ ପଟାଶଟା ଫାଟିଲା ବମ୍ଫାଟିଆ ତାହା ଭିତର ଅଝାଳ ଆଡକୁ ବାହାରିଲା । ବମ୍ଫାଟିଆ କଣ ହେଲା ବୁଝିବା ଆଗରୁ ଅଝାଳରେ ନିଆଁ ଲାଗିଗଲା । ଉତ୍ତରା ପବନ ତ ପିଟୁଛି । ସାଆନ୍ତେ ସୁଖନୀକୁ ହାକିଲେ ବାଆଁକୁ ତିନି କାଠି । ଗୋରାପ ପଳେଇଲା । ବମ୍ଫାଟିଆ କାରବେଲ ହୁତୁହୁତ ଜଳୁଛି । ସାଆନ୍ତେ କିଛି ଭାବି ପାରୁନାହାନ୍ତି । କାଠ ଭଳି ଛିଡ଼ା ହୋଇଛନ୍ତି । ସାରେଙ୍ଗ ଓ ମାହାର୍ଥୀ ଡାକିଲେ 'ସାଆନ୍ତେ, ଠାକୁରାଣୀଙ୍କୁ ଭୋଗ କରନ୍ତୁ' ।.... ହଠାତ୍ ମକୁବାବୁ ସଚେତ ହୋଇଗଲେ । ତାଙ୍କୁ ଭୋଗ ଆଣିବାକୁ କୁହାଯାଇଥିଲା । ଖଇକୋରା ଦୋକାନ ତ ହେଇଟି ।

ମକୁବାବୁ ସର୍ବକୁଶଳରେ ଘରକୁ ଫେରି ଆସିଛନ୍ତି । ମୋଟାମୋଟି ବଜାରରୁ ସବୁ ଜିନିଷ ଆସିଛି । ଏଣୁ ଆଜି କୌଣସି ବକ୍ତୃତା ହୋଇନାହିଁ । ମକୁବାବୁ ଟା କପେ ଖାଇ ଖବର କାଗଜ ପଢ଼ିବାର ଚେଷ୍ଟା କରୁଛନ୍ତି । ଏ ସମୟରେ ସାନ ଝିଅ ଆସି କହିଲେ, 'ବାପା, ସେଟ୍ ଥିଓରି ଟିକିଏ ବୁଝେଇଦିଅ ।' ଅଙ୍କରେ ମକୁବାବୁ ସବୁବେଳେ କଞ୍ଚା । ଆଉ ଯେ ତ ମଡ଼ର୍ଣ୍ଣ ମାର୍ଥମେଟିକ୍ସ ଅର୍ଥାତ୍ ମଥା ମୋଡ଼ିସ୍ । ତଥାପି ବହିରୁ ପଢ଼ି ବୁଝାଇବାର ଚେଷ୍ଟା କଲେ । କହିବା ବାହୁଲ୍ୟ ଯେ ତା ଅସଫଳ ହେଲା । ଝିଅ ବିରକ୍ତ ହୋଇ କହିଲା, 'କଣ କହୁଛ ବାପା, ମୁଁ ତମ କଥା କିଛି ବୁଝି.ପାରୁନି ।' ପୁଣି ପଟ୍ଟ ପରିବର୍ତ୍ତନ । ସନ୍ୟାସୀ ଗଛମୂଳେ ବସିଛନ୍ତି । ବହୁ ଭକ୍ତଗଣ ଉପସ୍ଥିତ । ସନ୍ୟାସୀ ପ୍ରବଚନ ଶେଷ କରିଛନ୍ତି । ଶ୍ରୋତାଗଣଙ୍କ ମଧ୍ୟରୁ ଝିଅଟିଏ ପ୍ରଶ୍ନ କଲା 'ବାବା କଣ କହୁଛନ୍ତି । କିଛି ବୁଝିପାରୁନି ?'

ସନ୍ୟାସୀ ଈଷତ୍ ହାସ୍ୟ କରି କହିଲେ, ମା, ମୁକୁନ୍ଦକୁ ବୁଝିବା ଅତି କଠିନ । ପୁଣି ଅତି ସହଜ । ତା ପରେ ଗାଇବା ଆରମ୍ଭ କଲେ —

ଆନନ୍ଦ କନ୍ଦ ପ୍ରଭୁ ମୁକୁନ୍ଦ
ବିରାଟ ରୂପ ବିଶ୍ୱବ୍ୟାପୀ
ନାହିଁ ଆଦି, ନାହିଁ ମଧ୍ୟ
ତୁହିଁ ଅନନ୍ତ ବିଶ୍ୱବ୍ୟାପୀ

ବୁଝିଲ ମା, ମୁକୁନ୍ଦକୁ ବୁଝିବାର ଚେଷ୍ଟା କରନାହିଁ । କେବଳ ଆନନ୍ଦ ଗ୍ରହଣ କର । ବଳେ ବୁଝିପାରିବ ।

ଅର୍ଥାତ୍ ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ ଓରଫ ମକୁବାବୁ ଶେଷ ପର୍ଯ୍ୟନ୍ତ ଅବୁଝା ରହିଗଲେ ।



# ଅଦୃଶ୍ୟ ମାନବ

ଆପଣ କଣ କେବେ ଭାବିଛନ୍ତି ଯେ ଅଦୃଶ୍ୟ ହୋଇଗଲେ କେଡେ ମଜା ହୁଅନ୍ତା ? ଆପଣଙ୍କୁ କେହି ଦେଖି ପାରୁ ନଥାନ୍ତା, ଅଥଚ ଆପଣ ହୁଅନ୍ତେ ସବୁର ଦ୍ରଷ୍ଟା । ଯେତେଲୋକ ଆପଣଙ୍କଠାରୁ କଥା ଲୁଚାଇବାର ଚେଷ୍ଟା କରୁଛନ୍ତି ସେ ସବୁ ଧରା ପଡ଼ିଯାନ୍ତା । ତା ଛଡା ମନୁଷ୍ୟର କେତେ ବିଚିତ୍ର ମାଙ୍କଡ଼ାମି ଦେଖିବାକୁ ମିଳନ୍ତା । ସବୁବେଳେ ନୁହେଁ । କିନ୍ତୁ ବେଳେବେଳେ ଏପରି ପରିସ୍ଥିତି ସମ୍ଭବ । ଧରନ୍ତୁ ଆପଣ ମାଡ୍ରାସରେ ପହଞ୍ଚିଲେ । ଆପଣ ତାମିଲ ଜାଣନ୍ତି । କିନ୍ତୁ ବାହାନା କଲେ ଯେପରି ଆପଣ ଇଂରେଜୀ ଓ ହିନ୍ଦି ଛଡ଼ା କିଛି ଜାଣନ୍ତି ନାହିଁ । ସେତେବେଳେ ଆପଣ ଏକ ପ୍ରକାର ଅଦୃଶ୍ୟ ମାନବ । ଲୋକେ ଆପଣଙ୍କ ଆଗରେ ନାନା କଥା ହେବେ । ହୁଏତ ଆପଣଙ୍କୁ ଠକିବାର ଯୋଜନା ଆପଣଙ୍କ ଆଗରେ କହିବେ । ତା ଏକ ବିଚିତ୍ର ଅଭିଜ୍ଞତା ।

ଥରେ କେତେ ବର୍ଷ ତଳେ ମୋତେ ଡେରାଡୁନରୁ ଘରକୁ ହଠାତ୍ ଆସିବାକୁ ପଡ଼ିଲା । ନିଜର କାମ, ଅତଏବ ଖର୍ଚ୍ଚ ନିଜର । ଏଣୁ ସେକେଣ୍ଡ କ୍ଲାସ ସ୍ଲିପର । ଏପରି ଅବସ୍ଥାରେ ମୁଁ ଯାତ୍ରାର ଆବଶ୍ୟକତା ସବୁ ଯଥା ସମ୍ଭବ ସଂକ୍ଷିପ୍ତ ଏବଂ ସରଳ କରିବାକୁ ଚେଷ୍ଟା କରେ । ପ୍ରଚଣ୍ଡ ଶୀତ । ଅତଏବ ଶେଯ ପକାଇବା ଓ ଘୋଡ଼ିହେବା ଦରକାର । କିନ୍ତୁ ମୁଁ ଶେଜ କମ୍ବଳ ଇତ୍ୟାଦି ସ୍ଥାନରେ ଖଣ୍ଡେ ସ୍ଲିପିଂ ବ୍ୟାଗ ନେଇଥାଏ । ଭିତରେ ପାଇଜାମା ଓ ଉପରେ ଗରମ ପ୍ୟାଣ୍ଟ । ପ୍ୟାଣ୍ଟ କାଢି ଦିଅନ୍ତୁ । ଲୁଗା ବଦଳାଇବା ଲାଗି ଯିବା ଅନାବଶ୍ୟକ । ସାମନା ବର୍ଥରେ ଦୁଇଜଣ ବଙ୍ଗାଳୀ ଯୁବକ । ସେମାନଙ୍କ ଭିତରୁ ଜଣେ ବଡ଼ ଆଗ୍ରହର ସହିତ ମୋତେ ଲକ୍ଷ୍ୟ କରୁଛି । ସ୍ଲିପିଂ ବ୍ୟାଗ ଖୋଲିବା ଏବଂ ମୋର ଶୋଇବାର ବ୍ୟବସ୍ଥା ତା ପକ୍ଷରେ ଅତିଶୟ କୌତୁହଳପ୍ରଦ । ହଠାତ୍ ବଙ୍ଗଳାରେ କହିଲା, 'ବାଃ ବେଶ୍ ମଜା ।' ଅନ୍ୟ ଟୋକାଟି ବିଜ୍ଞ ଲୋକ ପରି ତାର ବନ୍ଧୁଙ୍କୁ ବୁଝାଇବାକୁ ଲାଗିଲା ଯେ ସେ ଏପରି ଜିନିଷ ଦେଖିଛି । ଜିଓଲୋଜିକାଲ୍ ସର୍ଭେରେ ଏପରି ଜିନିଷ ଦିଆଯାଏ । କଥାବାର୍ତ୍ତାରୁ ଜଣାଗଲା ଯେ ଦୁଇଜଣ ଯାକ କିରାଣୀ । ଜଣେ ଏକ ପ୍ରାଇଭେଟ କମ୍ପାନୀରେ କାମ କରେ

ଓ ବର୍ତ୍ତମାନ ସେ ବଦଳି ହୋଇ କଲିକତା ହେଡ୍ ଅଫିସ୍‌କୁ ଯାଉଛି । ଅନ୍ୟ ଜଣେ ONGC ରେ କାମ କରେ । ଛୁଟିରେ କଲିକତା ଯାଉଛି । ଦୁଇଜଣଯାକ ନାନା ପ୍ରକାର କଥାବାର୍ତ୍ତା ଆରମ୍ଭ କଲେ । କଲିକତା ଯେ ସ୍ୱର୍ଗ ତା ଉଭୟ ଏକମତ । ଜଣେ କଲିକତା ଯାଉଥିବାରୁ ଅନ୍ୟଜଣକ ତାର ଭାଗ୍ୟର ଭୂୟୀ ପ୍ରଶଂସା କରିବାକୁ ଲାଗିଲା ଓ ପ୍ରଥମ ଜଣକ ତା ବନ୍ଧୁକୁ ସାନ୍ତ୍ୱନା ଦେବାକୁ ଲାଗିଲା ଯେ ଦିନେ ଅବଶ୍ୟ ତାର ମଧ୍ୟ ସମୟ ଆସିବ ଓ ସେ କଲିକତା ବଦଳି ହେବ । ଯେ ଭଦ୍ରଲୋକ ବଦଳି ହୋଇ ଯାଉଛନ୍ତି ସେ ସାଙ୍ଗରେ ଆଣିଛନ୍ତି ଅନେକ କାଠପେଡି । ସାଧାରଣତଃ ସେପରି ପେଡିରେ ବୋତଲ ପ୍ୟାକ୍ ହୁଏ । ସେହି ସ୍ୱର୍ଗୋପମ ମହାନଗରୀର ବର୍ଣ୍ଣନା ଶୁଣିବାକୁ ବେଶ ଲାଗୁଛି । କଲିକତା ସହର ମୋ ପକ୍ଷରେ ଅପରିଚିତ ନୁହେଁ । ବମ୍ବେ ଓ ଦିଲ୍ଲୀର କେତେକ ସମାଜରେ କଲିକତାକୁ ଗାଳିଦେବାର ଯେଉଁ ଫେଶନ ଅଛି ତାର ମୁଁ ଅବଶ୍ୟ ବିରୋଧି । କିନ୍ତୁ ଚେଡଲା ବା ଉଲଟାଡାଙ୍ଗା ଯେ ଇନ୍ଦ୍ରପୁରୀର ବଡ଼ଦାଦା ତାହା ସ୍ୱୀକାର କରିଯିବା ମଧ୍ୟ ଅସମ୍ଭବ ।

ସେ ରାତି ଶୋଇପଡିଲି । ସକାଳୁ ନିଦ ଭାଙ୍ଗିଲା ବେଳକୁ ସେ ଅମରାବତୀ ପ୍ରସଙ୍ଗ । ଏଣୁ ଠିକ୍ କଲି ଯେ ଏମାନଙ୍କୁ ମୁଁ ଜାଣିବାକୁ ଦେବି ନାହିଁ ଯେ ମୁଁ ବଙ୍ଗଳା ଜାଣେ । ଏମାନଙ୍କର ପ୍ରଶ୍ନର ଉତ୍ତର ମୁଁ ବେଶ ବେଦରକାରୀ ଭାବେ କଠିନ ଉର୍ଦ୍ଦୁରେ ଦେବା ଆରମ୍ଭ କଲି । ଯେପରିକି ଅତି କମ୍‌ରେ ଅଧା ନ ବୁଝିପାରିବେ । ମୁଁ ଯେ କେଉଁ ଜାତିର ଲୋକ ସେ ବିଷୟରେ ଉଭୟେ ବେଶ କିଛି ସମୟ ଆଲୋଚନା କଲେ । ପ୍ରଥମେ ଭାବିଥିଲେ ଯେ ମୁଁ 'ପଶ୍ଚିମା ନେଡ଼େ' ଅର୍ଥାତ୍ ଉତ୍ତର ପ୍ରଦେଶର ମୁସଲମାନ । ତାପରେ ଭାବିଥିଲେ ଯେ ମୁଁ 'ପାଂଜାବୀ' ଅର୍ଥାତ୍ ପଂଜାବର । କିନ୍ତୁ ଅନେକ ଆଲୋଚନା ପରେ ସେ ପ୍ରସ୍ତାବ ନାକଚ୍ ହେଲା । ଅଥଚ ଉଭୟଙ୍କର ସଂଶୟର ସମାଧାନ ଦୁଆର ଉପରେ ଲାଗିଥିବା ଚାର୍ଟରୁ ହୋଇପାରିଥାନ୍ତା କାରଣ ଯେ ସେଥିରେ ସମସ୍ତଙ୍କର ନାଁ ଥାଏ । ବେଳେବେଳେ ଅବଶ୍ୟ ଉତ୍ତର ଭାରତରେ ମୋ ନାଁ ରେଲବାଲା ମଲହୋତ୍ରା କରିଥାନ୍ତି । କିନ୍ତୁ ଏଥର ତା ହୋଇ ନଥିଲା । ପ୍ରାୟ ଉପର ବେଳ ଚାରିଟା ସମୟରେ ମୋଗଲ ସରାଇ ଷ୍ଟେସନରେ ପହଞ୍ଚିଲୁ । ମୋ ସହଯାତ୍ରୀମାନଙ୍କ ମଧ୍ୟରୁ ଜଣେ କହିଲା ଯେ ଏହିଠାରୁ ଏଲାହାବାଦ୍ ଯିବାକୁ ହୁଏ । ଅନ୍ୟଜଣଙ୍କ ପଚାରିଲା ଏଲାହାବାଦ ସିକନ୍ଦରବାଦର ଖୁବ ନିକଟରେ ପରା । ଅନ୍ୟଜଣକ କହିଲା ଯେ ତାର ସିକନ୍ଦରବାଦ ବିଷୟରେ କୌଣସି ଧାରଣା ନାହିଁ । ପ୍ରଥମ ଭଦ୍ରଲୋକ ବୁଝାଇଲେ ଯେ ତାଙ୍କ ପଡାର ଗୋଟିଏ ଟୋକା ସିକନ୍ଦାରାବାଦରେ କିଛିଦିନ ଥିଲା ଓ ସେ କହିଥିଲା ସିକନ୍ଦରାବାଦ ଓ ଏଲାହାବାଦ ଏକଦମ୍ ଲାଗିକରି । ମୁଁ ମଧ୍ୟ ଏହି ଅଭିନବ ଭୂଗୋଳ ପାଠ ଶୁଣି କାବା ହୋଇ ଯାଇଥିଲି । କିନ୍ତୁ ଟିକିଏ ଭାବିବା ପରେ କଥାଟା ସ୍ପଷ୍ଟ ହେଲା । ଭଦ୍ରଲୋକ ଶୁଣିଛନ୍ତି ଠିକ୍ । କିନ୍ତୁ ହାଇଦ୍ରାବାଦଟା ତାଙ୍କ ମନ ଭିତରେ ହୋଇଯାଇଛି

ଏଲାହାବାଦ ନିଶ୍ଚୟ । ଏହି ବାଦଶାହଙ୍କ ଅତି ଗୋଳମାଳିଆ ଜିନିଷ ।

ମୋଗଲସରାଇ ପରେ ଉତ୍ତରପ୍ରଦେଶ ଶେଷ । ଏଣୁ ଏଠି ଅବକାରୀ ପୁଲିସ ଚେକିଂ କରେ । ଅର୍ଥାତ୍ କେହି ମଦ ନେଇ ଯାଉଛି କି ନାହିଁ । ହଠାତ୍ ଚେକିଂ ପାର୍ଟି ଆସି ଆମ ଡ଼ବାରେ ପହଞ୍ଚିଲା । ଗୁଣ ଚିହ୍ନେ ଗୁଣିଆ । ପାର୍ଟି ସାଙ୍ଗେ ସାଙ୍ଗେ କଲିକତା ଯାତ୍ରୀଙ୍କ ପାଖରେ ହାଜିର ।

ପେଟିରେ ଥିବା ମାଲ ସମ୍ବନ୍ଧରେ ପ୍ରଶ୍ନ କରାଗଲା । ଭଦ୍ରଲୋକ କହିଲେ 'ଦାବାଇ ହୈ' ଅର୍ଥାତ୍ ଔଷଧ । ତତ୍‌କ୍ଷଣାତ୍ ପୁଲିସବାଲାଙ୍କର ଉତ୍ସୁକତା ବଢ଼ିଗଲା । କାରଣ ସାଧାରଣତଃ ଦବାଇ ମୃତ ସଂଜିବନୀ ସୁରା ଜାତୀୟ ଜିନିଷ ଓ ତାହା ଅବକାରୀର କାର୍ଯ୍ୟପରିଧି ମଧରେ । ପୁଲିସବାଲା ଦେଖାଇବାକୁ କହିଲେ । ଭଦ୍ରଲୋକ ନାରାଜ । କ୍ରମଶଃ ବଚସା ଆରମ୍ଭ ହେଲା । ପୁଲିସବାଲା ଧରିନେଲେଣି ଯେ ଏଥିରେ ଅବକାରୀ ମାଲ ଅଛି । ଏଣୁ ଉତ୍କୋଚର ସମ୍ଭାବନା ସ୍ୱର୍ଣ୍ଣିମ । ଏଣୁ ଭଦ୍ରଲୋକ ସ୍ପଷ୍ଟ କହିପାରୁନାହାନ୍ତି ଯେ ତାଙ୍କ ସାଥିରେ ଥିବା କାଠ ପେଟିରେ କଣ ଅଛି ।

ମୁଁ ଦେଖିଲି ଯେ ଅବସ୍ଥା ସଙ୍ଗୀନ । ଏ ଟୋକା କଣ ନେଇ କରି ଯାଉଛି ସେ କଥା ତା କମ୍ପାନୀ ଜାଣେ ଓ ଭଗବାନ ଜାଣନ୍ତି । ଅତିକମରେ ଏହାକୁ ତ ମାଲୁମ ଥିଲା ଭଳିଆ ଜଣାପଡୁ ନାହିଁ । ବର୍ତ୍ତମାନ ପୁଲିସ ଯଦି ସନ୍ଦେହରେ ଏ ମାଲ ଜବତ କରେ ତା ହେଲେ ବିଚରା କରିବ କଣ ? ଆଗରୁ ଏହାର ଭୂଗୋଳ ଜ୍ଞାନ ସମ୍ବନ୍ଧରେ ନମୁନା ମିଳି ସାରିଛି । ହୁଏତ ତାର ଅପାରଗତା ଦୃଷ୍ଟିରୁ ଚାକିରି ଖଣ୍ଡ ମଧ ଯାଇପାରେ । ଏଣେ ଏହାର ବ୍ୟବହାରରୁ ପୁଲିସର ସନ୍ଦେହ କରିବାର ଯଥେଷ୍ଟ କାରଣ ଅଛି । ଏଣୁ ତାଙ୍କୁ ଯଥା ସମ୍ଭବ ସରଳ ହିନ୍ଦୀରେ ପଚାରିଲି ଯେ ସାଥିରେ ତାଙ୍କୁ ନିଶ୍ଚୟ କମ୍ପାନୀ ଚିଠି ଦେଇଥିବ । ସେଥିରେ କଣ ଲେଖା ହୋଇଛି ତା ପୁଲିସକୁ ଦେଖାଇ ଦିଅନ୍ତୁ । ଭଦ୍ରଲୋକ ତା ମଧ କରିବାକୁ ନାରାଜ । ମୁଁ ସ୍ପଷ୍ଟ କରିଦେଲି ଯେ ଆପଣଙ୍କୁ ପୁଲିସ ଚୋରାମଦ ନେଉଥିବା ସନ୍ଦେହ କରି ଗିରଫ କରିପାରେ । ରାତିକ ତ ହାଜତରେ ରହିବେ । ସକାଳେ ଏଠି ଆପଣଙ୍କୁ ଜାମିନ କିଏ ନେବ ? ଆପଣଙ୍କ କମ୍ପାନୀର ଲୋକ କଲିକତାରୁ ଖବର ପାଇ  ଆସି ଆପଣଙ୍କୁ ବାହାର କରୁ କରୁ ଅତି କମରେ ସପ୍ତାହେ  ଶ୍ରୀଘର ବାସ । ତା ଯଦି ଆପଣଙ୍କୁ ସୁହାଉଛି ତା ହେଲେ ମୋର କିଛି କହିବାର ନାହିଁ । ଏଥର ଅବସ୍ଥାର ଗୁରୁତ୍ୱ ହୃଦୟଙ୍ଗମ ହେଲା । ଭଦ୍ରଲୋକ ବାକ୍ସ ଖୋଲି ଚିଠି ବାହାର କଲେ । ପୁଲିସବାଲା ଝପଟି ପଡ଼ି ଚିଠିଟା ଖୋଲିଦେଲେ । ତା ପରେ ହାବିଲଦାର ଚିଠିଟା ମୋତେ ପଢ଼ିବାକୁ କହିଲେ ।

ଚିଠି ଏକ ଔଷଧ କମ୍ପାନୀର । ଚିଠିରେ ଲେଖା ଅଛି ଯେ ଡୁନ ଉପତ୍ୟକାର ବିଭିନ୍ନ ଝରଣାର ପାଣିର ସାମ୍ପୁଲ କଲିକତାର ହେଡ୍ ଅଫିସକୁ ପରୀକ୍ଷା ଲାଗି ଅମୁକଙ୍କ ସାଥିରେ

ପଠାଗଲା । ଶୁଣି ତ ସମସ୍ତଙ୍କର ଚକ୍ଷୁ ସ୍ଥିର । ପୁଲିସ୍‌ବାଲା ଅତ୍ୟନ୍ତ ବିରକ୍ତି ସହ ବାହାରିଗଲେ । ଗଲାବେଳକୁ ଭୋଜପୁରି ହିନ୍ଦିରେ କହୁଥିବା ଶୁଣାଗଲା, 'ଐସା ବଡ଼ବକ୍‌ଓ୍ୟା, ପହେଲେ କାହେ ବତାୟା ନହିଁ ରହା ପାନି ଲେ ଜାଓ୍ୱତ୍ ହି । କିତନା ଟେମ୍ ବରବାଦ ହୋଇ ଗଓ୍ୱା ।' ଯାହା ହେଉ ବଙ୍ଗସନ୍ତାନର ବିପଦଟା କଟିକଲା ।

ତା ଆରଦିନ ଭୋରବେଳା । ବର୍ଦ୍ଧମାନ ଓ କଲିକତା ମଝିରେ ଏକ ଛୋଟ ଷ୍ଟେସନରେ କାଲ୍‌କା ମେଲକୁ ପାସ ଦେବାପାଇଁ ଆମ ଗାଡ଼ି ଅଟକି ଗଲା । ଏଣୁ ଅଧିକାଂଶ ଯାତ୍ରୀଙ୍କୁ ପ୍ରବଳ ଚାତୃଷା ଗ୍ରାସ କଲା । ତାର ସୁବିଧା ନେବାପାଇଁ ପଂଝେ ହକର ଗାଡ଼ିରେ ତାଙ୍କର ପୋର୍ଟେବଲ ଚା ଦୋକାନ ଧରି ଆସିଗଲେ । ଏପରି ଏକ କଳାକାର ଆମକୁ ବି ଚା ଦେଲେ । କିନ୍ତୁ ଦୁଃଖର ବିଷୟ ଗରମ ମୋଟେ ନଥିଲା । ମୋ ପକ୍ଷରେ ଧୈର୍ଯ୍ୟ ରଖିବା ଅସମ୍ଭବ ହୋଇ ପଡ଼ିଲା । ମୋର ଏ ପର୍ଯ୍ୟନ୍ତ ଖେଳୁଥିବା ପାର୍ଟ ଭୁଲିଯାଇ ଅତି କଞ୍ଚା ବଙ୍ଗଳାରେ ତାର ଚା ବିଷୟରେ ମୋର ମତାମତ ସ୍ପଷ୍ଟ କରିବାକୁ ଲାଗିଛି, ହଠାତ୍ ମୋର ଦୁଇ ସହଯାତ୍ରୀଙ୍କ ଉପରେ ଦୃଷ୍ଟି ପଡ଼ିଗଲା । ସେମାନଙ୍କ ଆଖି ବେଶ ସିଝା ଅଣ୍ଡା ଆକୃତି ଧାରଣ କଲାଣି । ସେମାନେ ଥଙ୍ଗେଇ ଥଙ୍ଗେଇ ପଚାରିଲେ ଆପଣ ବଙ୍ଗାଳୀ ? ମୁଁ ଉତ୍ତର ଦେଲି, 'ନାହିଁ ଆଜ୍ଞା ! କଥା କଣ କି ରବୀନ୍ଦ୍ରନାଥଙ୍କ ଲେଖା ମୁଁ ଅନୁବାଦରେ ପଢ଼ିବି ଏଥିଲାଗି ମୁଁ ରାଜି ନୁହେଁ । ଏଣୁ ଭାଷାଟା ଶିଖିନେଲି ।' ତାପରେ ପ୍ରଶ୍ନ, 'ଆପଣ ଆଗରୁ କାହିଁକି ବଙ୍ଗଳା କହୁ ନଥିଲେ' ? ବଡ ଅସୁବିଧା ପ୍ରଶ୍ନ । କଣ ଉତ୍ତର ଦେବି ? ହଠାତ୍ ଗୁରୁକୃପାରୁ ବୁଦ୍ଧି ଖେଳିଗଲା । ସାଙ୍ଗେ ସାଙ୍ଗେ ଉତ୍ତର ଦେଲି, 'ଯେଉଁ ଯାଗାରେ ଯେଉଁ ଭାଷା । ଲକ୍ଷ୍ନୌରେ ଉର୍ଦ୍ଦୁ କହୁଥିଲି । ବର୍ଦ୍ଧମାନ ବଙ୍ଗଦେଶରେ ବଙ୍ଗଳା ।'

ଏଥିରେ ତ ଚଳିଗଲା । କିନ୍ତୁ ବଡ଼ ଅସୁବିଧା ଓ ସଂକୋଚ ଲାଗୁଥିଲା । ଅର୍ଥାତ୍ ଆପଣ ଯଦି ଅଦୃଶ୍ୟ ମାନବ ହୁଅନ୍ତି, ତାହେଲେ ଅଦୃଶ୍ୟ ରହନ୍ତୁ । ଦୃଶ୍ୟ ହେଲେ ହଲାପଟାରେ ପଡ଼ିବେ ।



# ଜୋସେଫ

ଫାଦର ଓ'ହାରା ଜଣେ ମେଡ଼ିକାଲ୍ ମିଶନାରୀ । ତାଙ୍କର ଜନ୍ମ ଅବଶ୍ୟ ସେହି ସୁଦୂର ଆୟାରଲାଣ୍ଡରେ । କିନ୍ତୁ ବହୁକାଳରୁ ସେ ସେହି ଦୁର୍ଗମ ପୂର୍ବଘାଟ ପର୍ବତମାଳାର ଅତି ଭିତରେ ଏହି କ୍ଷୁଦ୍ର ଗ୍ରାମ ବେଲଣାରେ ରହି ଆସୁଛନ୍ତି । ଏଇଠି ତାଙ୍କ ଡାକ୍ତରଖାନା । ଏକ ସମୟରେ ଏଠିକୁ ଚାଲି କରି ଆସିଥିଲେ ଏବଂ କୁଡ଼ିଆ ଘରରୁ ଡାକ୍ତରଖାନା ଆରମ୍ଭ ହେଲା । ସେ କାହିଁ କେଉଁ ଯୁଗର କଥା । ବର୍ତ୍ତମାନ ଅବଶ୍ୟ ଏହି ଗାଁ ମୋଟର ରାସ୍ତା କଡ଼ରେ । ଡ଼ାକ୍ତରଖାନା ମଧ୍ୟ ପ୍ରତିଷ୍ଠିତ ପକ୍କା ଟାଇଲ ଛାତ ଘରରେ । ପଚିଶ ଜଣ ରୋଗୀଙ୍କ ଲାଗି ୱାର୍ଡ ଅଛି । ଆଉ ଦୁଇଜଣ ଡାକ୍ତର, ନର୍ସ ଓ ଅନ୍ୟ କର୍ମଚାରୀ ମଧ୍ୟ ଅଛନ୍ତି । ତେବେ ଫାଦର ଓ'ହାରା ତାଙ୍କ ଡ଼ାକ୍ତରଖାନାକୁ ଆଉ ବଢ଼ିବାକୁ ଦେଇ ନାହାନ୍ତି । କାରଣ ତାହା ହେଲେ ଡ଼ାକ୍ତରଖାନା ଏକ ସଂସ୍ଥା ହେଇଯିବ ଯେଉଁଠି ରୋଗୀ ଓ ଡ଼ାକ୍ତରଙ୍କ ପ୍ରତ୍ୟକ୍ଷ୍ୟ ସମ୍ପର୍କ ଆଉ ରହିବ ନାହିଁ । ବିଶାଖାପାଟଣା ମାତ୍ର ତିନି ଚାରି ଘଣ୍ଟାର ବାଟ ଏବଂ ଡ଼ାକ୍ତରଖାନା ପାଖରେ ଜର୍ମାନୀରୁ ଆସିଥିବା ଏକ ଅତି ଆଧୁନିକ ଆମ୍ବୁଲାନ୍ସ ଅଛି ଯାହା ଦ୍ୱାରା କି ଯେ କୌଣସି ସାଂଘାତିକ ରୋଗୀକୁ ମୋଟାମୋଟି ନିରାପଦରେ ବିଶାଖାପାଟଣା ମେଡ଼ିକାଲ କଲେଜକୁ ନେଇଯାଇ ହେବ । ଫାଦର ଓ'ହାରା ସ୍ପଷ୍ଟ କହନ୍ତି ଯେ, ସେ ମ୍ୟାନେଜର ହେବାକୁ ଚାହାଁନ୍ତି ନାହିଁ । ରୋଗୀର ଚିକିତ୍ସା କରିବା ତାଙ୍କର କର୍ତ୍ତବ୍ୟ, କାଗଜଚିକିତ୍ସା ନୁହେଁ । ସେ ଗୋଟିଏ ଛୋଟ ଲୋକ ଏବଂ ଛୋଟ ଛୋଟ ଲୋକଙ୍କର ସେବା କରିବାର ବ୍ରତ ନେଇଛନ୍ତି । ବିଶପ୍ ତାଙ୍କୁ ଅନ୍ୟତ୍ର ନେବାର ଓ ବେଶି ଦାୟିତ୍ୱ ଦେବାର ଅନେକ ଚେଷ୍ଟା କରିଛନ୍ତି । କିନ୍ତୁ ଓ'ହାରା ବିଶପଙ୍କୁ ଅତି ବିନୟର ସହ କହିଛନ୍ତି ଯେ ବହୁ ବର୍ଷର ଚେଷ୍ଟା ପରେ ସେ ନିଜକୁ ଏହି ନିରୀହ ଆଦିବାସୀଙ୍କ ପରି ଅନୁଭବ କରିବାରେ ସମର୍ଥ ହୋଇଛନ୍ତି ଏବଂ ତାଙ୍କଠାରୁ ଏହି ଈଶ୍ୱରଙ୍କର ବରଦାନ ଛଡ଼ାଇ ନିଆନଯାଉ । ବିଶପ ଦୀର୍ଘଶ୍ୱାସ ପକାଇ ଚୁପ୍ ହୋଇ ଯାଇଛନ୍ତି । କାରଣ ସେ ଜାଣନ୍ତି ଚର୍ଚ୍ଚର ଅମଲାତନ୍ତ୍ର ତାଙ୍କୁ କିପରି ନାଗପାଶରେ ଛନ୍ଦି ଦେଇଛି ।

ଫାଦର ଓ'ହାରା ଯେଉଁ ଘରେ ରହନ୍ତି, ସେଠି ତାକୁ ସାହେବ ବଙ୍ଗଳା କୁହାଯାଏ ।

କିନ୍ତୁ ଅନ୍ୟ ଡ଼ାକ୍ତରମାନଙ୍କ ଘର ତାହାଠାରୁ ବେଶି ବଡ଼ । ଏପରିକି ନର୍ସମାନଙ୍କ କ୍ୱାଟର ମଧ୍ୟ ସାହେବ ବଙ୍ଗଳାଠାରୁ ସାନ ନୁହେଁ । ଦୁଇଟି କୋଠରି ଏବଂ ଗୋଟିଏ ଶୌଚାଳୟ । ଟିକିଏ ଦୂରରେ ରନ୍ଧାଘର ଏବଂ ସାହେବଙ୍କର ଚାକର ବା ରାନ୍ଧୁଆଣି ବା ସହକାରୀ ଦିଗ ବୁଢାର ରହିବା ଘର । ଗୋଟିଏ ଘର ସାହେବଙ୍କର ଶୋଇବା ଓ ବ୍ୟକ୍ତିଗତ ଉପାସନା ଲାଗି । ଅନ୍ୟ ଘରଟି ବସିବା ଘର, ପଢା ଘର ଓ କ୍ଲିନିକ ମଧ୍ୟ । ଆସବାବପତ୍ର ମାନେ ଦୁଇଟି ପଟା ଖଟ, ଗୋଟିଏ ଟେବୁଲ, ଦୁଇଟି ଚଉକି ଓ ଦୁଇଟି ବେଞ୍ଚ । ଦୁଇଟି ଆଲମିରାରେ ପୁସ୍ତକ ଓ କେତେକ ଡାକ୍ତରୀ ଉପକରଣ ଓ ଔଷଧ । ସାଜସଜ୍ଜା ମଧ୍ୟରେ ଶୋଇବା ଘରେ କାନ୍ଥରେ କ୍ରୁଶବିଦ୍ଧ ଯୀଶୁଙ୍କ ଗୋଟିଏ କାଠ ଖୋଦାଇ ଓ ବସିବା ଘରେ ମା ମେରୀଙ୍କର ଯୀଶୁଙ୍କୁ କୋଳରେ ଧରିଥିବାର ଏକ ଚିତ୍ର ।

ମଟର ରାସ୍ତା ହେବାରୁ କେତେକ ଜିନିଷ ହୋଇ ଗଲାଣି । ଗୋଟିଏ ଛୋଟିଆ ବଜାର, ଡ଼ାକଘର ଏବଂ ପୂର୍ତ୍ତବିଭାଗର ଏକ ଡ଼ାକବଙ୍ଗଳା । ହତା ମଧ୍ୟରେ ପୂର୍ତ୍ତବିଭାଗ ଷ୍ଟୋର । ରାସ୍ତା କାମରେ ଲାଗୁଥିବା କେତେ ଜିନିଷ ସେଠି ଥାଏ । ଡ଼ାକବଙ୍ଗଳାର ହତା ଭିତରେ ଏକଛତ୍ର ସମ୍ରାଟ ହେଲା ଜୋସେଫ୍ । ଏହି ପାହାଡ ଜଙ୍ଗଲର ଦେଶର ନାନା କିମ୍ବଦନ୍ତୀ ପରି ଜୋସେଫ୍ ମଧ୍ୟ ଏକ କିମ୍ବଦନ୍ତୀ କହିଲେ ଚଳେ । ଏଠି ବସ୍ତୁନିଷ୍ଠ Objective ସତ୍ୟ ଓ କିମ୍ବଦନ୍ତୀ ମଧ୍ୟରେ ଫରକ କରିବା କଷ୍ଟ । ଆପଣ ଜାଣନ୍ତି ଯେ ପାଲଟାବାଘ ଏକ କିମ୍ବଦନ୍ତୀ ଯେପରି ୟୁରୋପିଆନ ମାନଙ୍କର ଉଇରଉଲଫ Were wolf ବା ଡ୍ରାକୁଲା । କିନ୍ତୁ ସନ୍ଧ୍ୟା ପରେ ଯଦି ଚାଲିକରି ଆସୁଥାଆନ୍ତି, ଆପଣଙ୍କ ମନ ଭିତରେ ପାଲଟା ବାଘ ଅବଶ୍ୟ ଉଙ୍କି ମାରିବ । ଜୋସେଫ୍ ଅବଶ୍ୟ ପାଲଟାବାଘ ପରି କୌଣସି ଭୟଙ୍କର ଜିନିଷ ନୁହେଁ । ତେବେ ତାର ଜୀବନୀ ବିଷୟରେ ସମସ୍ତ ଇଲାକାରେ ବିସ୍ତର ମତଭେଦ । ଆତ୍ମଜୀବନୀର ଉପାୟ ନାହିଁ । କାରଣ ଜୋସେଫକୁ ପ୍ରଶ୍ନ କଲେ ପ୍ରାୟ ଏହି ମର୍ମରେ ଉତ୍ତର ଦିଏ, 'ଆରେ ମୋର କଥା କି ? କେଜାଣି ଜନମ ହେଲି କେବେ, ଆଉ କୁ ଦିନ ମରିବି । ଏଇଆ ତ ।' ଅବଶ୍ୟ ଏହା ସଂକ୍ଷେପରେ ମାନବର ଆତ୍ମକାହାଣୀ । କିନ୍ତୁ ଲୋକେ ତ ଆଉ ଏପରି ଏକ ଗଭୀର ଦାର୍ଶନିକ ଉତ୍ତରରେ ସନ୍ତୁଷ୍ଟ ହେବେ ନାହିଁ । ଏଣୁ ତାହା ବିଷୟରେ ନାନା ଅସମ୍ଭବ କଥା ଶୁଣାଯାଏ । ସେ ସବୁକୁ ମିଳାଇଲେ ମୋଟାମୋଟି ଜଣା ପଡେ ଯେ ଜୋସେଫ୍ ଗୋଟିଏ ପିତୃମାତୃହୀନ ପରଜା ପିଲା ଥିଲା । ଫାଦର ଓ'ହାରା ତାକୁ ଏକ ପ୍ରକାର ଗୋଟାଇ ଆଣିଥିଲେ ଅର୍ଥାତ୍ ଆଶ୍ରୟ ଦେଇଥିଲେ । କିଏ କହନ୍ତି ଯେ ତିନି ଚାରି ବର୍ଷର ନିରାଶ୍ରୟ ବାଳକ ହିସାବରେ ଓ'ହାରାଙ୍କ ଶରଣ ପାଇଥିଲା ଓ'ହାରାଙ୍କ ଆଶ୍ରିତ ପିତୃମାତୃହୀନ ବାଳକ ହୋଇଥିବାରୁ ସେ ଖ୍ରୀଷ୍ଟ ଧର୍ମ ଓ ନାମ ଜୋସେଫ୍ ତାହାର ଆଶ୍ରୟଦାତାଙ୍କଠାରୁ ପାଇଥିଲା ।

ସାହେବ ଓ ତାଙ୍କ ଚାକର ଦିଗ ଉଭୟ ସେ ସମୟରେ ଯୁବକ । ଏଣୁ ଜୋସେଫ୍

ଦିଗର ସହାୟକ ହୋଇଗଲା । ତାହାର କୌଣସି ନୈସର୍ଗିକ ବରଦାନ ଥିବାରୁ ସେ ଅତି ଉତ୍ତମ ରାନ୍ଧି ପାରୁଥିଲା ଏବଂ ସାଧାରଣ ରନ୍ଧାରେ ମଧ୍ୟ ଏକ ନବୀନତ୍ୱ ଆଣି ପାରୁଥିଲା । ସାହେବଙ୍କ ଚେଷ୍ଟାରେ ସେ ମୋଟାମୋଟି ସାକ୍ଷର ମଧ୍ୟ ହୋଇ ଯାଇଥିଲା । ଏପରିକି ଇଂରେଜୀ ଅକ୍ଷର ମଧ୍ୟ ଶିଖି ଯାଇଥିଲା ଏବଂ କିଛି ଶବ୍ଦାବଳୀ ମଧ୍ୟ । ଫଳତଃ ହିସାବ ଲେଖି ସାହେବଙ୍କୁ ଦେଇ ପାରୁଥିଲା ଯଥା RAIS-IRS । ଫାଦର୍ ଓ'ହାରା ତାକୁ ରୁଦ୍ରପୁରମ୍‌ରେ ଥିବା ବଡ଼ ମିଶନ ଡ଼ାକ୍ତରଖାନାକୁ ଖାନସମା ପାଖେ ଟ୍ରେନିଂ ଲାଗି ପଠାଇ ଦେଲେ । ସେଠି ସେ ରନ୍ଧନ ବିଦ୍ୟାରେ ଅତି ପାରଦର୍ଶିତା ଲାଭ କଲା । ଦୁଇଟା କିରାସିନ ଟିଣ କାଠ ଚୁଲିରେ ଅଦ୍ଭୁତ ବେକିଂ କରି ପାରୁଥିଲା । ବାଇଗଣକୁ ଚୀଜ୍ ସହିତ ବେକିଂ କରି ଅପୂର୍ବ ଅବଦାନ ସୃଷ୍ଟି କରି ଦେଉଥିଲା । ଏହି ମିଶନରେ ଅନେକ ଇଟାଲିଆନ୍ ପାଦ୍ରୀ ଥିଲେ । ଏଣୁ ଇଟାଲୀର ରନ୍ଧା ଏପରିକି ମଇଦାରୁ ପାସ୍ତା, ମାକାରୋନୀ ଇତ୍ୟାଦି ତିଆରି କରିପାରୁଥିଲା ।

କିନ୍ତୁ ଭାଗ୍ୟର ଅସମ୍ଭବ ପରିହାସ । ରନ୍ଧନ ବିଦ୍ୟା ସହିତ ଆଉ ଗୋଟିଏ ବିଦ୍ୟା ମଧ୍ୟ ଆୟତ୍ତ କରିନେଲା । ତାହା ଅତିରିକ୍ତ ମଦ୍ୟପାନ । ଏଣୁ ରୁଦ୍ରପୁରମ୍‌ର ପାଦ୍ରୀମାନେ ଜୋସେଫ୍‌କୁ ଓ'ହାରାଙ୍କ ପାଖକୁ ଫେରସ୍ତ ପଠାଇଦେଲେ । ଜୋସେଫ ଅବଶ୍ୟ ଓ'ହାରାଙ୍କ ଖାଦ୍ୟରେ ଅନେକ ଉତ୍କର୍ଷ ଆଣି ଦେଲା । କିନ୍ତୁ ତାର ଅନ୍ୟ ଗୁଣଟି ଓ'ହାରାଙ୍କ ପକ୍ଷରେ ବିକଟ ସମସ୍ୟା । ଉପଦେଶ, ଦଣ୍ଡ ଏପରିକି ଦିଗର ମାଡ଼ ମଧ୍ୟ ନିଷ୍ଫଳ ପ୍ରମାଣିତ ହେଲା । ସେହି ସମୟରେ ରାସ୍ତା ତିଆରି ଚାଲୁଥାଏ । ଜଣେ ଇଂଜିନିୟର ଡାକୋଷ୍ଟା ଏହାର ଦାୟିତ୍ୱରେ ଥିଲେ । ଡାକୋଷ୍ଟା କର୍ଣ୍ଣାଟକର ରୋମାନ କାଥଲିକ । ଏଣୁ ଓ'ହାରାଙ୍କ ସହିତ ପରିଚୟ ଓ ଖାସା ବନ୍ଧୁତା ହେଲା । ସେ ଜୋସେଫ୍‌ର ରନ୍ଧା ଖାଇ ଅତି ତୃପ୍ତ ହେଲେ । ଶେଷରେ ଜୋସେଫ୍‌କୁ ଚଉକିଦାର ରଖାଇଦେବାକୁ ଚାହିଁଲେ । ବର୍ତ୍ତମାନ ସେ ତାଙ୍କ ଲାଗି ରନ୍ଧାବଢ଼ା କରିବ । ପରେ ସେ ଯେଉଁ ଘରେ ରହୁଛନ୍ତି ସେଇଟା ଡାକବଙ୍ଗଳା ହେବ । ସେଠି ସେ ଚଉକିଦାର-ଖାନସମାର କାର୍ଯ୍ୟ କରିବ । ଏହା ଭିତରେ ଜୋସେଫ ଓ'ହାରାଙ୍କ ଲାଗି ସମସ୍ୟା ହେବା ଆରମ୍ଭ କରିଥିଲା । ଏଣୁ ଓ'ହାରା ଏହାକୁ ବିଦା କରିବାକୁ ଅବଶ୍ୟ ଚାହୁଁଥିଲେ । ଏଣୁ ସେ କହିଲେ, 'ଦେଖ ଡ଼ାକେଷ୍ଟା । ମୋର କୌଣସି ଆପତ୍ତି ନାହିଁ । କିନ୍ତୁ ସେଇଟା ଭୀଷଣ ମଦୁଆ ହେଲାଣି । ଏବଂ ମୋର ଶତଚେଷ୍ଟା ସତ୍ତ୍ୱେ ତାର କୌଣସି ପରିବର୍ତ୍ତନ ନାହିଁ । ଏଣୁ ତୁମେ ବୁଝି ବିଚାରି ଯାହା କରିବ କର' । କିନ୍ତୁ ଡାକୋଷ୍ଟାଙ୍କ ପକ୍ଷରେ ଏହା ସମସ୍ୟା ହିଁ ନଥିଲା । କାରଣ ତାଙ୍କ ମହକୁମାରେ ତ ମଦୁଆ ଅଭାବ ନାହାନ୍ତି । କିନ୍ତୁ ଭଲ ଖାନ୍‌ସାମା ମିଳେ କେଉଁଠି । ଫଳତଃ ବେଲଣା ଡାକବଙ୍ଗଳାରେ ଜୋସେଫ୍ ଚଉକିଦାର ଖାନସାମା । ଜୋସେଫ୍ ଲାଗି ଡାକବଙ୍ଗଳା ମଧ୍ୟ ପ୍ରସିଦ୍ଧ ହୋଇଗଲା । ବଡ ଅଫିସରମାନେ ମଧ୍ୟ ଟୁରରେ ଏଠି ରାତି ରହଣି କରନ୍ତି କାରଣ ଏପରି ଖାନା ବିଶାଖାପାଟଣାଠାରୁ ରାୟପୁର

ମଧ୍ୟରେ କେଉଁଠି ମିଳିବ ନାହିଁ । ସେଠି ମଧ୍ୟ ନ ମିଳିପାରେ ।

ଅନ୍ୟ ଦିଗରୁ ଅର୍ଥାତ ମଦ ଖାଇବା ବିଷୟରେ ମଧ୍ୟ ଜୋସେଫ୍ ପ୍ରସିଦ୍ଧରୁ ପ୍ରସିଦ୍ଧତର ହେବାକୁ ଲାଗିଲା । ସେ ପ୍ରାୟ ସବୁବେଳେ ମତ୍ତ ଅବସ୍ଥାରେ ଏବଂ ବହୁତ ସମୟରେ ପ୍ରମତ୍ତ ଅବସ୍ଥାରେ ଥାଏ । ସେ ବିଷୟରେ ମଧ୍ୟ ନାନା କିମ୍ବଦନ୍ତୀ । ଥରେ ପାଖର ଏକ ଗାଁରୁ ପ୍ରଚୁର ମଦ ଖାଇ ରାତିରେ ଆସୁଥିଲା । ରାସ୍ତାରେ ଲମ୍ବା ହୋଇ ଶୋଇପଡ଼ିଲା । କେତେବେଳକୁ ଗୋଟିଏ ଜିପ୍ ଆସୁଥିଲା, ଜିପ୍‌ରେ ଆସୁଥିବା ଲୋକେ ଦେଖିଲେ ଯେ ଗୋଟିଏ ବାଘ ବସିଛି । ବାଘ ତ ଗନ୍ଧରୁ ଚିହ୍ନେ । ମଦର ଗନ୍ଧ ଏତେ ପ୍ରବଳ ଯେ ତାହା ମଣିଷର ଗନ୍ଧକୁ ବିଲକୁଲ ଚପେଇ ଦେଇଛି । ଏଣୁ ବାଘ ବୁଝି ପାରୁ ନଥିଲା ଏଇଟା କଣ । କହିବା ବାହୁଲ୍ୟ ଯେ ସେ ଜୋସେଫ୍ । ଥରେ କୁଆଡ଼େ ଜୋସେଫ୍‌କୁ ସାପ କାମୁଡ଼ି ଦେଇଥିଲା ଅଥଚ ରକ୍ତରେ ମଦର ପ୍ରଚଣ୍ଡ ପ୍ରଭାବ ହେତୁ ବିଷ ମଧ୍ୟ କାଟୁ କଲା ନାହିଁ । ଜୋସେଫ୍ ଅବିବାହିତ । ତାହାର ପ୍ରଧାନ କାରଣ ତାହାର ମନ ପ୍ରାଣ ଉପରେ ଭାଟି ବାସିନୀ ଓ ସଲପ ଗଛ ବାସିନୀ ଏତେ ପ୍ରବଳ ପ୍ରଭାବ ପକାଇ ସାରିଛନ୍ତି ଯେ ସେଠି ଆଉ ଅନ୍ୟର ସ୍ଥାନ ନାହିଁ, ସେ ନାରୀ ହେଉ ବା ଭଗବାନ । ତେବେ ଏଥିଲାଗି କେହି କେବେ ଜୋସେଫ୍ ରନ୍ଧାରେ ଗୋଳମାଳ କରିବାର ଜାଣିନାହିଁ । ସେହିପରି କେହି ଜୋସେଫ୍ ମତୁଆଲା ହୋଇ ସାଇକେଲରୁ ପଡ଼ି ଯିବାର ଜାଣେ ନାହିଁ, ଯଦିଚ ସେ ମାଲ ସନ୍ଧାନରେ ଦୂର ଗାଁକୁ ଓ ନିକଟବର୍ତ୍ତୀ ସହରକୁ ସାଇକେଲରେ ଯାଉଥାଏ । ଜୋସେଫ୍‌ର ଖ୍ୟାତି ସେହିଠାର ଆଉ ଦୁଇ ତିନିଟି ପରିବାରର ଅର୍ଥନୈତିକ ଉନ୍ନତିର କାରଣ । ଜୋସେଫ୍ ଲାଗି ଅନେକ ଅଫିସର୍ ବେଳଣାରେ ରାତି ରହଣି କରନ୍ତି । ରନ୍ଧା ଲାଗି ତ ପ୍ରଧାନ ଆବଶ୍ୟକତା କୁକୁଡ଼ା । ଏଣୁ ପ୍ରତିବେଶୀ ଦୁଇ ତିନିଟି ପରିବାର କୁକୁଡା ପାଳନ କଲେ ଏବଂ ଭଲ ଦାମ ମଧ୍ୟ ପାଇଲେ । ପାଖରେ ପାତ୍ର ଦୋକାନ ମଧ୍ୟ କିଛି ଜୋସେଫ୍‌ର ଦରକାରି ଜିନିଷ ରଖିବା ଆରମ୍ଭ କଲା । ଯଥା ମଇଦା, ଡ଼ାଲଡ଼ା, ରିଫାଇନ୍ ତେଲ, ଟମାଟୋ ସସ୍ । ଆପଣ ଯଦି ହଠାତ୍ ପହଞ୍ଚନ୍ତି ତାହାହେଲେ ଇଟାଲିଆନ ପଦ୍ଧତିରେ ଚିକେନ୍ ରୋଷ୍ଟ ମିଳିବ । ଯଦି ଆପଣ କହନ୍ତି ତ ଇଟାଲିଆନ୍ ଷ୍ଟାଇଲର ରସୁଣ ବାସନା ଥିବା ଗରମ ପାଉଁରୁଟି ମଧ୍ୟ ପାଇ ପାରିବେ । ରୋଷ୍ଟ ସହିତ ସୁସ୍ୱାଦୁ । ଆଉ ଯଦି ଆଗରୁ ଖବର ଦେଇ ଥାଆନ୍ତି ତ ତାହା ହେଲେ କଥା ନାହିଁ । କେଉଁ ପଞ୍ଚତାରକା ରେସ୍ତୋରାଁ ତାହାକୁ ସରି ? ତାହାର ଚିକେନ୍ ନୁଡୁଲ ବା ପିଜା ବା ଲାସାନା ଅନବଦ୍ୟ ।

ପାହାଡ଼ରେ ବର୍ଷା ହେଲେ ତ କଥା ନାହିଁ । ପ୍ରଥମେ କଚାଡ଼ି ଦେଇ ଗଲା ପରେ ସେଇ ଝିପ୍ ଝିପ୍ ଲାଗିଥିବ । କେତେବେଳେ ବଢୁଥିବ ତ କେତେବେଳେ କମୁଥିବ, ଛାଡ଼ିବ ନାହିଁ । ଏହିପରି ବର୍ଷାରାତି । ଡ଼ାକ ବଙ୍ଗଳାରେ ଜଣେ ମକୁଦର ମଧ୍ୟ ଥାଏ । ଆପ୍ପା ରାଓ । ତାହାର

ପ୍ରକୃତ କାମ ସଫେଇ କର୍ମଚାରୀ । କିନ୍ତୁ ତାହା କାଗଜରେ ତାହାର ଅସଲ କାମ ଜୋସେଫ ଅନୁପସ୍ଥିତିରେ ଡ଼ାକବଙ୍ଗଳ ଚାବି ରଖିବା । କାରଣ ଜୋସେଫ୍ ତାହାର ମଦ୍ୟ ସଂଗ୍ରହ ଅଭିଯାନ ଲାଗି ଅନେକ ସମୟରେ ଅନୁପସ୍ଥିତ ରହିବା ସ୍ୱାଭାବିକ । ସେହିପରି ଦିନେ ଜୋସେଫ୍ ଆପ୍‌ପା ରାଓକୁ ବଙ୍ଗଳା ଜିମା ଦେଇ ପଙ୍ଗାପଦର ଗାଁକୁ ସନ୍ଧ୍ୟା ବେଳେ ଯାଇଛି । ସେଠି ଉତ୍ତମ ମଦ ମିଳିଗଲା । ବେଶି ଗଣି ଦେଇ ଖୁସ ମିଜାଜରେ ଡ଼ାକ ବଙ୍ଗଳାକୁ ଫେରିବା ଆରମ୍ଭ କରିଛି । ଉଠାଣିଟା, ଏଣୁ ସାଇକେଲରୁ ଓହ୍ଲାଇ ଠେଲିବାକୁ ଲାଗିଗଲା । ଅବଶ୍ୟ ତାହାକୁ ଜୋସେଫ୍‌ର ଭ୍ରୂକ୍ଷେପ ନାହିଁ । କିଛି ବାଟ ଗଲାପରେ ଗୋଟିଏ ପୋଲିଆ । ଇଚ୍ଛା ହେଲା ଏଠି ସାଇକେଲଟାକୁ ଟିକିଏ ଡ଼େରି ଦେଇ ବିଡ଼ି ଖଣ୍ଡେ ଲଗେଇବ ।

ସାଇକେଲକୁ ଡ଼େରି ଦେଇ ପକେଟରେ ଥିବା ପ୍ଲାଷ୍ଟିକ ଥଳିରୁ ବିଡ଼ି ଡ଼ିଆସିଲି ବାହାର କରିବାକୁ ଯାଉଛି । ଏହି ସମୟରେ ପୋଲତଳୁ ଏକ ଅଦ୍‌ଭୁତ ଶବ୍ଦ ଶୁଣିଲା । କୌଣସି ଜନ୍ତୁର ନୁହେଁ । ନାରୀ କଣ୍ଠ । କାନ୍ଦିବାର ଧ୍ୱନି । ଏହିପରି ସବୁ ଶବ୍ଦ ହେବା ବିଷୟରେ ଏ ଅଞ୍ଚଳରେ ଅନେକ ଗଳ୍ପ ଅଛି । ତାହା ସବୁ ଅବଶ୍ୟ ପ୍ରେତ ବା ଅପଦେବତା ବିଷୟକ । କିନ୍ତୁ ଜୋସେଫ୍ ଭଗବାନ ବା ଶଇତାନ କାହାକୁ ଡ଼ରେ ନାହିଁ । ଶବ୍ଦଟା କଣ ଦେଖିବାକୁ ତଳକୁ ଓହ୍ଲାଇଲା । ଡିଆସିଲି ମାରିଲା ଓ ଦେଖିଲା ଏକ ନାରୀ । କୋଳରେ ନବଜାତ ଶିଶୁ । ଜୋସେଫ୍ ପଚାରିଲା, 'କିଏ ଲୋ ତୁ ?' ସ୍ତ୍ରୀଟି କେବଳ କାନ୍ଦୁଛି । ଜୋସେଫ୍ କହିଲା, 'ମୁଁ ବେଲଣା ଡ଼ାକବଙ୍ଗଳାର ଚଉକିଦାର ଜୋସେଫ୍ । ଡ଼ର ନାହିଁ । ତୁ କିଏ ଓ ତୋର କଣ ହେଲା କହ ।'

ସ୍ତ୍ରୀ ଲୋକଟିର ସାହସ ହେଲା; କାରଣ ଜୋସେଫ୍ ଏ ଅଞ୍ଚଳର ଅତି ପ୍ରସିଦ୍ଧ ଲୋକ ଏବଂ ତାହାର ଅନ୍ୟ ସବୁ ଗୁଣ ସତ୍ତ୍ୱେ ସେ ଯେ କାମିନୀ କାଞ୍ଚନ ବ୍ୟାପାରରେ ସତ୍ , ସେ କଥା ସମସ୍ତେ ଜାଣନ୍ତି । ଏଣୁ ସେ ତାର କାହାଣୀ ଆରମ୍ଭ କଲା ।

'ମୁଁ ଗାଲିପଡ଼ା ଗାଁର ଗୁରୁବାରୀ । କଣ କଥା ତୁ ତ ବୁଝୁଥିବୁ । ସେ କଥା ଆଉ କଣ କହିବି । ବଣରେ ଲୁଚି ଲଚି ଜନମ ଦେଲି । ଛୁଆକୁ ଧରି ବାହାରିଥିଲି ରାତିରେ କାହା ଦୁଆରେ ପିଲାଟିକି ଥୋଇ ଦେଇ ଯିବି । ତା' କପାଳରେ ମହାପ୍ରୁ ଯାହା ଲେଖିଥିବ । ତାପରେ ବଣରେ ଲୁଗାରେ ରସି ଲଗେଇ ଏ ପୋଡ଼ା ଜୀବନଟାକୁ ସାରିଦେବି । ହେଲେ ଏଇଲେ ଜ୍ୱର ହୋଇଗଲା । ଆଉ ଚାଲି ପାରୁନି । ବର୍ଷା ଲାଗି ପୋଲତଳେ ଆଶ୍ରା କରିଥିଲି । ଜୋସେଫ୍, ତୁ ହେଲେ ପିଲାଟିକି ନେଇ ଯା । କାହା ଦୁଆରେ ଥୋଇ ଦବୁ । ନହେଲେ ତ ଜନ୍ତୁ ଜୁନ୍ତା ଖାଇଯିବେ । ଏତିକି କରିଦେ ଜୋସେଫ୍ । ତୋର ଧର୍ମ ହେବ ।'

ଜୋସେଫ୍ ଖ୍ରୀଷ୍ଟାନ୍ । ତେଣୁ ତାର ଶିଶୁ ପ୍ରତି ଏକ ସମ୍ମାନ ରହିଛି କାରଣ ଫାଦର ଓ'ହରାଙ୍କ ବସିବା ଘରର ମାଡ଼ୋନା ଓ ଶିଶୁର ଛବି ତାହାର ମସ୍ତିଷ୍କରେ ଛାପି ହୋଇ

ଯାଇଛି । ସେ ଡ଼ାକିଲା, 'ଗୁରୁବାରୀ ପଦାକୁ ଆ । ମୁଁ ତୋତେ ଫାଦରଙ୍କ ଡ଼ାକ୍ତରଖାନାକୁ ନେଇଯିବି । ମୁଁ ଜାଣେ ଫାଦର ତୋତେ ବାହାର କରିଦେବ ନାହିଁ । ସେ ତୋର ବ୍ୟବସ୍ଥା କରିବ । ତୁ ତ ଚାଲି ପାରିବୁ ନାହିଁ, ଏଣୁ ମୋ ସାଇକେଲରେ ବସ । ମୁଁ ତୋତେ ନେଇଯିବି ।'

ଗୁରୁବାରୀ ପକ୍ଷରେ ଏହା ଅବିଶ୍ୱାସ୍ୟ ଦୈବକରୁଣା । ତାହା ଛଡ଼ା ଅନ୍ୟ ଉପାୟ କଣ ଅଛି ? ବାହାରି ଆସିଲା । ଛୁଆଟିକୁ କାନିରେ ଘୋଡ଼ାଇଛି ।

ଏହି ଅଞ୍ଚଳରେ ସରକାରୀ ଚାକିରିଆ ମାନଙ୍କର ମୁଣ୍ଡରେ ଏକ ଠେକା ଭିଡ଼ିବା ପ୍ରଥା । ଯାହାଙ୍କର ଉର୍ଦ୍ଦିରେ ପଗଡ଼ି ଅଛି ତ ଅଛି । ନ ହେଲେ ଖଣ୍ଡେ ଧଳା ଲୁଗା ମୁଣ୍ଡରେ ପାଗ ବାନ୍ଧିବା ବିଧି । ଏଣୁ ଜୋସେଫ୍ ମୁଣ୍ଡରେ ମଧ ଠେକା ଥିଲା । ଯଦିଚ ବାହାର ପଟଟା ବର୍ଷା ଲାଗି କିଛିଟା ଭିଜିଥିଲା, ଭିତରଟା ତ ଶୁଖିଲା ଥିଲା । ଜୋସେଫ୍ ମୁଣ୍ଡରୁ ପାଗ ଖୋଲି ଗୁରୁବାରୀକୁ ଦେଲା । କହିଲା, 'ଚଉତି କରି ପିଲାକୁ ଘୋଡ଼େଇ ଦେ । ନହେଲେ ଭିଜି ଭିଜି ମରିଯିବ । ତୁ ତୋ କାନିଟାକୁ ପିଲାଠୁ କାଢ଼ି ନିଜ ମୁଣ୍ଡରେ ଦେ ।'

ଗୁରୁବାରୀ ତାହା କଥା ମାନି ଲୁଗା ଠିକ୍ କଲା ଏବଂ ପିଲାକୁ ଧରି ସାଇକେଲର କେରିଅରରେ ବସିଲା । ପକେଟରେ ଥିବା ଏକ ଛୋଟ ବୋତଲରୁ ଟୋକାଟେ ଟାଣି ଦେଇ ଜୋସେଫ୍ ସାଇକେଲ ଠେଲି ଠେଲି ଡାକ୍ତରଖାନାକୁ ବାହାରିଲା । ବର୍ଷା ସେଇ ଚାଲିଛି । କାହା ମୁହଁରେ କଥା ନାହିଁ । ଜୋସେଫ୍ ସାଇକେଲ ଠେଲିବାରେ ବ୍ୟସ୍ତ । ଗଡାଣିରେ ବିଶେଷ ସାବଧାନ ହେବା ଦରକାର । ଗୁରୁବାରୀ ଈଶ୍ୱରଙ୍କର ଏହି ଅପ୍ରତ୍ୟାଶିତ ଓ ଅହେତୁକ କରୁଣାରେ ମୁଗ୍ଧ । କାନ୍ଦିବା ମଧ ଭୁଲି ଯାଇଛି ।

ଶେଷକୁ ଗନ୍ତବ୍ୟ ସ୍ଥଳରେ ପହଞ୍ଚିଲେ । ଅର୍ଥାତ୍ ଡାକ୍ତରଖାନାର ସାହେବ ବଙ୍ଗଳା । ସାମନାରେ ଏକ ବିରାଟ ତିନ୍ତୁଳି ଗଛ । ସେଠି ସାଇକେଲ ଡ଼େରି ଦେଇ ଗୁରୁବାରୀକୁ ଧରି ବଙ୍ଗଳା ବାରଣ୍ଡାକୁ ଉଠି ଆସିଲା । ଡାକ ଛାଡ଼ିଲା 'ଫାଦର ଫାଦର ।'

ଓ'ହାରାଙ୍କ ନିଦ ଭାଙ୍ଗିଗଲା । ମୁଣ୍ଡତଳୁ ଟର୍ଚ୍ଚ ଲାଇଟ୍ ବାହାର କରି, ବାହାରକୁ ଆସିଲେ । ଟର୍ଚ୍ଚ ପକାଇ ଦେଖିଲେ ଯେ ଓଦା ସରସର ଜୋସେଫ୍ ଓ ଗୋଟିଏ ଯୁବତୀ ଯାହାର ହାତରେ ଧଳା ଲୁଗାରେ ଗୁଡ଼ିଆ ହୋଇଥିବା ଗୋଟିଏ ପିଲା । ଏତେ ବର୍ଷା ସତ୍ତ୍ୱେ ଜୋସେଫ୍‌ର ଦେହରୁ ସୁଗନ୍ଧ ଛାଡ଼ି ନାହିଁ, କାରଣ ରାସ୍ତା ସାରା ତାହାର ପକେଟସ୍ଥ ମାଲରୁ କିଛି ଚଢେଇ ଚାଲିଥିଲା ।

ଫାଦର ଓ'ହାରା ଉଭୟ ବିରକ୍ତ ଏବଂ ଆଶ୍ଚର୍ଯ୍ୟ । ଓ'ହାରା କହିଲେ, 'ଜୋସେଫ୍ ତୁ ପୁଣି ଅତି ବେଶି ମଦ ଖାଇଲୁ । ଏ ସ୍ତ୍ରୀଟି କିଏ ? ଏ ଛୁଆ କଣ ତୋର ?'

ଜୋସେଫ୍ ଅତ୍ୟନ୍ତ ତାଚ୍ଛଲ୍ୟର ସହିତ କହିଲା, 'ଫାଦର୍, ତୁ ବି ଏକଥା କହିଲୁ ! ଜୋସେଫ୍‌ର କଣ ଛୁଆ ହୁଏ ? ବାଇବେଲର ଜୋସେଫ୍‌ର କଣ ନିଜ ଛୁଆ ଥିଲା ? ଏ

ପିଲା ଈଶ୍ୱରଙ୍କର । ଏହି ଗେକି ଗଲିପଡାର ଗୁରୁବାରୀ । ଏହାକୁ ମୁଁ ପଙ୍ଗାପଦରରୁ ଆସୁଥିଲା ବେଳେ ବାଟରେ ପାଇଲି ଏ ଗେକିର ଦେହ ଖରାପ । ଜରରେ ଥରୁଛି । ପୋଲତଳେ ବର୍ଷାରୁ ବଞ୍ଚିବାକୁ ରହିଥିଲା । ଆଉ କାନ୍ଦୁଥିଲା । ଏହାର ଆଉ ପିଲାର ଜୀବନ ବଞ୍ଚାଇବାକୁ ମୁଁ ତାକୁ ସାଇକେଲରେ ବସାଇ ନେଇ ଆସିଲି । ମୋର ଯେତିକି ପାରିବାର, ସେତିକି କଲି, ଆଗକୁ ତୋ ଧରମ ଓ ପ୍ରଭୁଙ୍କ ଦୟା ।'

ସେହି ସମୟରେ ଖୁବ୍ ଯୋର ବିଜୁଳି ମାରିଲା । ହଠାତ୍ ଗୁରୁବାରୀ ଓ ତା' ଛୁଆକୁ ଫାଦର ଓ'ହାରା ସେହି ଅଲୌକିକ ଆଲୋକରେ ଦେଖିଲେ । ମନ ଭିତରଟା କଣ ହୋଇଗଲା । ତତ୍‌କ୍ଷଣାତ୍ ଛାତିରେ କ୍ରସ ଚିହ୍ନ କରି ଲାଟିନ୍ ଆଭେ ମାରିଆ (AVE MARIA) ମନ୍ତ୍ର ମନେ ମନେ ପଢ଼ିଲେ 'ଧନ୍ୟ ମା ଜନନୀ ମେରୀ । ତୁମେ ମା କରୁଣାମୟୀ । ନାରୀ କୂଳରେ ତୁମେ ଧନ୍ୟ ଏବଂ ଧନ୍ୟ ତୁମର ଦେହଜାତ ତ୍ରାଣ କର୍ତ୍ତା ଯୀଶୁ । ମହିମାମୟୀ ମା ମେରୀ, ପାପୀ ତାପୀଙ୍କୁ କରୁଣା କର ଏବଂ ସେହିଦିନ କରୁଣା କର ଯେଉଁଦିନ ଆମ ଚତୁର୍ଦ୍ଦିଗରେ ମରଣର କରାଳ ଛାୟା ଘୋଟି ଆସିବ ।'

ତାହାପରେ ବଡ ପାଟିରେ ଦିଗ ବୁଡାକୁ ଡ଼ାକିଲେ । ତାକୁ କହିଲେ, 'ନିଅାଁ ଜାଳି ଏ ମା' ଓ ପିଲା ସେକି ହେବାର ବନ୍ଦୋବସ୍ତ କର । ନିଅାଁ ଜାଳି ସାରି ନିର୍ମଳା ଦୀଦୀକୁ ଖବର ଦିଅ, ଏହାକୁ ଆଡ୍‌ମିଟ୍ କରିବେ । ଏହାପରେ ଏହି ସ୍ତ୍ରୀକୁ ଟିକିଏ ଚା' ଓ ଦୁଇଖଣ୍ଡ ବିସ୍କୁଟ ଦିଅ ।'

ଫାଦରଙ୍କ ଆଦେଶ ମତେ ଦିଗ ଗୁରୁବାରୀକୁ ରକ୍ଷାଘର ଆଡ଼କୁ ନେଇଗଲା । ଏହା ଭିତରେ ଜୋସେଫ୍ ପରମ ପରିତୃପ୍ତି ସହ ବରଣ୍ଡାରେ ଲମ୍ବ ହୋଇ ଶୋଇ ପଡ଼ିଛି । ମୁଣ୍ଡରୁ ଦାୟିତ୍ୱ ଓହ୍ଲାଇଯିବା ପରେ ଅବଶ୍ୟ ନିଶାଟା ଘୋଟି ଆସିଛି । କିନ୍ତୁ ଫାଦର ଓ'ହାରା ଏକ ଲୟରେ ଜୋସେଫ୍‌କୁ ଚାହିଁ ଥାଆନ୍ତି । ଭାବୁଥାଆନ୍ତି ଏହି ମଦୁଆ ଜୋସେଫ୍ ହିଁ ପ୍ରକୃତ ଖ୍ରୀଷ୍ଟାନ ।

(ବାଇବେଲରେ ଜୋସେଫ୍ ଯୀଶୁ ଖ୍ରୀଷ୍ଟଙ୍କର ପାଳନକାରୀ । ମେରୀ ଯଦିଚ ଜୋସେଫ୍‌ଙ୍କ ପତ୍ନୀ, ଯୀଶୁ ଈଶ୍ୱରଙ୍କର ପୁତ୍ର ଏବଂ ମେରୀଙ୍କ ଗର୍ଭଧାନ ଅଲୌକିକ । (Immaculate conception, ତାହାହିଁ ମଦୁଆ ଜୋସେଫ୍ ଫାଦର ଓ'ହାରାଙ୍କୁ କହିଛି ।)



# ସୁରତରଙ୍ଗିଣୀ

ରମେଶ ଏକ ବଡ଼ କମ୍ପାନୀରେ ଜଣେ ବଡ଼ କର୍ମଚାରୀ । ବଡ଼ ବୋଲି ଅବଶ୍ୟ ଅନ୍ୟମାନେ କହିଥାନ୍ତି । ରମେଶ ମତରେ ସେ ମଧ୍ୟମ ସ୍ତର ବା Middle Level ମ୍ୟାନେଜର । ତାର ସମସ୍ତ ଜୀବନଶୈଳୀ ସେହିପରି । ଅନେକ ଭାବନ୍ତି ଯେ ରମେଶ ସୁନାର ଚାଟିଆ କାମୁଡ଼ିଛି । ଅର୍ଥାତ୍ ପ୍ରାୟ ସବୁଥିରେ ସଫଳ । ନିଜ କାମରେ ଅନେକ ସୁନାମ । ବଡ଼ ହାକିମ ମାନେ ପ୍ରୀତ । ତାହାଠାରୁ ବେଶି ହାକିମାଣୀମାନେ । ତାହାର ଅବଶ୍ୟ ଏକ ଗୌଣ (ବା ମୁଖ୍ୟ, ଯେପରି ରୁଚି) କାରଣ ହେଲା ରମେଶ ଅବିବାହିତ । ଅତଏବ ଚାଳିଶ ବର୍ଷ ପାର ହେଲା ବେଳକୁ ହୁଏତ ଜଣେ ଡାଇରେକ୍ଟର ହୋଇ ଯାଇପାରେ । କିନ୍ତୁ ରମେଶ ତାର ଜୀବନଦର୍ଶନ ଥରେ ତାର ଜଣେ ବନ୍ଧୁକୁ ବୁଝାଉ ବୁଝାଉ କହୁଥିଲା ଯେ ସ୍ଥିର ହୋଇ ରହିବା ପ୍ରକୃତିର ବା ସଂସାରର ନିୟମ ନୁହେଁ । ହୁଏତ ଉପରକୁ ଉଠିବାକୁ ହେବ ନଚେତ ତଳକୁ ଖସିବାକୁ ହେବ । ତା ପକ୍ଷରେ ତଳକୁ ଖସିବାଟା ଅତି ଅବାଞ୍ଛନୀୟ ହୋଇଥିବାରୁ ତାକୁ ଉପରକୁ ଯିବାକୁ ପଡ଼ିବ । ବାହା ହେବାକୁ ପଡ଼ିବ ଓ ସଂସାର କରିବାକୁ ପଡ଼ିବ । କିନ୍ତୁ ଭଗବାନ ବୁଦ୍ଧଙ୍କର ପ୍ରଦର୍ଶିତ ମଧ୍ୟମ ପନ୍ଥା ହିଁ ସର୍ବୋତ୍ତମ ଏବଂ ବର୍ତ୍ତମାନର ମଧ୍ୟମ ଅବସ୍ଥା ହିଁ ସବୁଠାରୁ ଉତ୍ତମ ଅବସ୍ଥା । ଏଥିରେ ଅଛି ଉତ୍ତମର କ୍ଷମତା ଓ ପ୍ରଭାବର କିଛି ଓ ଅଧମର ଦାୟିତ୍ୱମୁକ୍ତ ସ୍ୱାଧୀନତାରୁ କିଛି । ନିଜର ନିର୍ଣ୍ଣୟ ନେବାର ସ୍ୱାଧୀନତା ଅଛି । କିନ୍ତୁ ଯଦି ଭୁଲ ହୁଏ କେବଳ ଗାଳି । ବୋର୍ଡ଼ ଅଫ୍ ଡାଇରେକ୍ଟରସ୍‌ଙ୍କ ଆଗରେ ତ ଠିଆ ହେବାକୁ ପଡ଼ିବନି । ଅବଶ୍ୟ ତାର ଭୁଲ ହେବାଟା ମଧ୍ୟ ଅତି କ୍ୱଚିତ । ମହିଳା ସେକ୍ରେଟେରିମାନଙ୍କ ସାଥିରେ ଟିକିଏ ରସିକତା କଲେ ଚକ୍ଷୁଶୂଳ ହେବ ନାହିଁ । ବନ୍ଧୁ ଏବଂ ବିଶେଷ କରି ବାନ୍ଧବୀଙ୍କର ଅଭାବ ନାହିଁ । ଏହି ଅବସ୍ଥାର ମାଧୁର୍ଯ୍ୟର ପ୍ରଧାନ କାରଣ ହେଲା ଯେ ଏହା ଦୀର୍ଘଦିନ ସ୍ଥାୟୀ ହେବ ନାହିଁ ।

ରମେଶ (ସ୍ଥାନ କାଳ ପାତ୍ର ଭେଦରେ ମିଷ୍ଟର ମହାନ୍ତି, ରୋମି ବା ମହାନ୍ତି) ପ୍ରକୃତରେ ସେଲ୍‌ସ୍ ବା ବିକ୍ରୟ ବିଭାଗରେ ଜଣେ ମ୍ୟାନେଜର । କିନ୍ତୁ ତାର ଆବଶ୍ୟକତା ନାନା ସ୍ଥାନରେ ନାନା ସମୟରେ ପଡିଥାଏ । ବିଶେଷ କରି ଯେଉଁଠି କମ୍ପାନୀରେ ଭାବମୂର୍ତ୍ତି ବା Image ର

ପ୍ରଶ୍ନ ଉଠେ । ବାଲ୍ୟକାଳରୁ ରମେଶ ଇମେଜ୍ ବା ଭାବମୂର୍ତ୍ତି ସହିତ କାରବାର କରି ଆସୁଛି । ନିଜର ଏତେ ସୁନ୍ଦର ଭଲ ପିଲାର ଇମେଜ ତିଆରି କରି ଦେଇଥିଲା ଯେ ଅନେକ ବିଶ୍ୱାସଯୋଗ୍ୟ ରିପୋର୍ଟ ସତ୍ତ୍ୱେ ଗୁରୁଜନ ଏବଂ ମାଷ୍ଟରମାନେ ରମେଶର ସିଗାରେଟ୍ ଟଣାକୁ ବହୁକାଳ ବିଶ୍ୱାସ କରି ପାରି ନଥିଲେ । ଆଜିକାଲି ଅନେକ କମ୍ପାନୀ ନିଜର ଏକ ସାଂସ୍କୃତିକ ଭାବମୂର୍ତ୍ତି ଗଢିବାକୁ ଚାହାନ୍ତି । ଛବିର ପ୍ରଦର୍ଶନୀ, ଉଚ୍ଚାଙ୍ଗ ସଙ୍ଗୀତର ଆସର, ଏହି ସବୁ ଆଜିକାଲିର ବଡ଼ କମ୍ପାନୀମାନଙ୍କର ପ୍ରିୟ । ଯଦିଚ ଏ ସବୁ କାମ ପବ୍ଲିକ ରିଲେସନସ୍ ବା PROର କାମ, କିନ୍ତୁ ରମେଶ ଏଥିରେ ଜଡ଼ିତ ହୋଇ ପଡ଼ିବାର ଅନେକ ଦିନ ହେଲାଣି । ଥରେ କମ୍ପାନୀ ଏକ ଶିଶୁ କଳା ପ୍ରଦର୍ଶନୀର ଉଦ୍ୟୋଗ କଲା । PRO ଯାହା କରିବାକୁ ଯାଉଥିଲେ ତାହା ଅତ୍ୟନ୍ତ ଗତାନୁଗତିକ । ରମେଶ ଏ ବିଷୟରେ ମ୍ୟାନେଜିଂ ଡ଼ାଇରେକ୍ଟରଙ୍କ ସାଥିରେ ଗପସପ ଭଳି ନିଜର ମତାମତ ଦେଇଥିଲା । ଏଣୁ ତାକୁ କୁହାଗଲା ଏକ କାମର ପ୍ରଦର୍ଶନୀ କରିବାକୁ ଯାହାଦ୍ୱାରା କି ପ୍ରକୃତରେ କମ୍ପାନୀର ଭାବମୂର୍ତ୍ତୀ ଗଢି ହେବ । ରମେଶ ଓଡ଼ିଶାର ସବୁ ମୂକ ବଧିର ସ୍କୁଲକୁ ଦଉଡ଼ିଲା । ସେମାନଙ୍କର ଡ୍ରଇଁ ସଂଗ୍ରହ କଲା । ଚାନ୍ଦା ଦେବାର ଆଶା ଦେଇ ସ୍କୁଲ ମାନଙ୍କର ସହଯୋଗ ଯୋଗାଡ଼ କଲା । କମ୍ପାନୀର ଆନୁକୂଲ୍ୟରେ ଏକ ମୂକ ବଧିର ପିଲାଙ୍କର କଳା ପ୍ରଦର୍ଶନୀ ହୋଇଗଲା । ମନ୍ତ୍ରୀ ଉଦ୍‌ଘାଟନ କଲେ । ଖବର କାଗଜରେ ଖୁବ୍ ଛପା ହେଲା । ଦୁଇଜଣ ପିଲାଙ୍କୁ କମ୍ପାନୀ ବୃତ୍ତି ଦେଲା । ତା ପରଠାରୁ ଏହିପରି ସାଂସ୍କୃତିକ କାରବାର ସଙ୍ଗେ ରମେଶ ଘନିଷ୍ଠ ଭାବେ ଜଡ଼ିତ ।

ଏହିପରି କମ୍ପାନୀ କେତେ ବର୍ଷ ମଧ୍ୟରେ ଅନେକ ଚିତ୍ରକଳା ଓ ସଂଗୀତର ଉତ୍ସବ କରି ସାରିଲାଣି । ଏ ସବୁଥିରେ ରମେଶ ମୁଖ୍ୟ କାରପଦାର ଯଦିଚ ସଂଗୀତ ବା ଚିତ୍ରକଳା ବିଷୟରେ ତାର କୌଣସି ଜ୍ଞାନ ନାହିଁ । କିନ୍ତୁ ସେ ମ୍ୟାନେଜର ଅର୍ଥାତ ଯେ କୌଣସି କାମକୁ ସୂଚାରୁ ଓ ଶୃଙ୍ଖଳିତ ଭାବେ ଚଳାଇନେବାର କ୍ଷମତା ଅଛି । ଏଣୁ ସମସ୍ତେ ଖୁସି । ପ୍ରକୃତ ଦରକାରି ଲୋକେ ନିମନ୍ତ୍ରଣ ପାଇଲେ କି ନାହିଁ ଠାରୁ ଆରମ୍ଭ କରି ହଲରେ ଯେପରି ବାଜେ ଲୋକ ପଶି ଗୋଳମାଳ ନ କରନ୍ତି, ଏହି ସବୁ ଉପରେ ନଜର ରଖିପାରୁଥିବାରୁ ସବୁ ମହଲରେ ରମେଶର ଭୂୟସୀ ପ୍ରଶଂସା । ରମେଶ ପକ୍ଷରେ ମଧ୍ୟ ବାନ୍ଧି ହୋଇ କ୍ରମାଗତ ଦୁଇ ତିନିଘଣ୍ଟା ହଲରେ ବସିବା କଷ୍ଟ । ଏଣୁ ସେ ସାଧାରଣତଃ ଷ୍ଟେଜ ପଛରେ ଥାଏ ଏବଂ ଚାରିଆଡ଼େ ବୁଲୁଥାଏ । ଫଳତଃ ଉଚ୍ଚାଙ୍ଗ ସଙ୍ଗୀତକୁ ଏକା ମାଡ଼ରେ ଦୁଇଘଣ୍ଟା ହଜମ କରିବାକୁ ପଡେ ନାହିଁ ।

ଏଥର କମ୍ପାନୀ ଏକ ବଡ଼ କଳାକାରଙ୍କୁ ଆଣିଛି । ତାଙ୍କର ଉଚ୍ଚାଙ୍ଗ କଣ୍ଠ ସଙ୍ଗୀତ ପରିବେଷଣ କରିବା କଥା । ମ୍ୟାନେଜିଂ ଡାଇରେକ୍ଟର ନିଜେ ଉପସ୍ଥିତ ରହିବେ । ରମେଶ ପକ୍ଷରେ ଏହା କୌଣସି ସମସ୍ୟା ନୁହେଁ । ଏଠି ଏହିସବୁ ଆସରରେ କେନ୍ଦ୍ର ମନ୍ତ୍ରୀ ଓ ରାଜ୍ୟ

ମୁଖ୍ୟମନ୍ତ୍ରୀ ଆସିଛନ୍ତି । ସବୁ ସୁରୁଖୁରୁରେ ହୋଇଛି କାରଣ ରମେଶ ପ୍ରୋଟୋକୋଲ ବିଦ୍ୟା ବିଶାରଦ । ପ୍ରୋଟୋକୋଲର ଯାହା ଅଭିଧାନ ଅର୍ଥ ହେଉ ନାଁ କାହିଁକି ପ୍ରକୃତ ଅର୍ଥ ହେଲା ଯେ ପ୍ରତ୍ୟେକ ଅନୁଭବ କରିବ ଯେ ତାକୁ ଯେତେ ସମ୍ମାନ ମିଳିବା କଥା, ତାହାଠାରୁ ବେଶି ମିଳିଛି । କିନ୍ତୁ ଏଥର ମ୍ୟାନେଜିଂ ଡାଇରେକ୍ଟର ହୁକୁମ କରିଛନ୍ତି ଯେ ରମେଶ ହଲରେ ତାଙ୍କ ପାଖରେ ରହିବ । ଅବଶ୍ୟ ତାଙ୍କର ଏହି ଆଦେଶ ପଛରେ ଏକ ସୁଚିନ୍ତିତ ପରିକଳ୍ପନା ଅଛି । ସେ ଜାଣି ସାରିଲେଣି ଯେ ସମସ୍ତ ବ୍ୟବସ୍ଥା ରମେଶ ଉପରେ ନିର୍ଭରଶୀଳ ହୋଇ ଯାଉଛି । ଯଦିଚ ରମେଶ ଅତ୍ୟନ୍ତ ଦକ୍ଷ ଓ ସବୁ ସୁଚାରୁରୂପେ ପରିଚାଳନା କରୁଛି ତଥାପି ଜଣେ ଲୋକ ଉପରେ ଏତେ ନିର୍ଭର କରିବା ଭଲ ନୁହେଁ । ରମେଶ କୁଆଡ଼େ ଯାଇଥିବା ହେତୁ ବା ଦେହ ଖରାପ ଯୋଗରୁ ନ ଆସି ପାରିଲେ କଣ ସବୁ ଭଣ୍ଡୁର ହୋଇଯିବ । ଏଣୁ ଏହାଦ୍ୱାରା ରମେଶକୁ ବାଧ୍ୟ କରାଗଲା ଯେ ଶିଘ୍ର ଏପରି ଲୋକ ତିଆରି କରିବ ଯେ ତାଠାରୁ ଏହି କାମ ବୁଝିନେବ ଏବଂ ରମେଶର ଉପସ୍ଥିତିରେ ସେ ପରିଚାଳନା କରିବ । ରମେଶ ଯାଇ ପ୍ରତ୍ୟେକ କଥାରେ ମୁଣ୍ଡ ପୂରେଇ ପାରିବ ନାହିଁ କାରଣ ସେ ହଲରେ ନିଜ ହାକିମଙ୍କ ସାଙ୍ଗେ ବସିଥିବ । କିନ୍ତୁ ଯଦି ସତରେ ଭଣ୍ଡୁର ହେବାର ଲକ୍ଷଣ ଦେଖାଯାଏ ତ ରମେଶକୁ ତତ୍କ୍ଷଣାତ୍ ପଠାଯାଇପାରିବ । ରମେଶ ଅବଶ୍ୟ ଖବରଟା ପାଇ ପ୍ରମାଦ ଗଣିଲା । କିନ୍ତୁ ଉପାୟ କିଛି ନାହିଁ । ଏଣୁ ଭାଗବତ ବାଣୀ ଅନୁଯାୟୀ 'କର୍ମ କଷଣ ଦେହ ସହେ, ଅରଣ୍ୟେ ଅଜଗର ପ୍ରାୟେ' । ନିଜକୁ ପ୍ରସ୍ତୁତ କରି ନେଲା ।

ସେହି ଦିନ ଉପସ୍ଥିତ ହେଲା । ରମେଶ ହଲ ଦୁଆରେ ଅପେକ୍ଷା କରିଥିଲା । ତା ହାକିମ ଅର୍ଥାତ୍ ମ୍ୟାନେଜିଂ ଡାଇରେକ୍ଟରଙ୍କୁ ନେଇ ତାଙ୍କ ଲାଗି ଉଦ୍ଦିଷ୍ଟ ପ୍ରଥମ ଧାଡ଼ିର ସିଟକୁ ନେଇଗଲା । ଏକଥା ନୁହେଁ ଯେ ମ୍ୟାନେଜିଂ ଡାଇରେକ୍ଟର (ସଂକ୍ଷେପରେ ଏମ୍.ଡ଼ି) ଜଣେ ଉଚ୍ଚାଙ୍ଗ ସଙ୍ଗୀତର ରସଗ୍ରାହୀ । ରମେଶ ଯେଉଁ ପ୍ରକାର ଲୋକ, ଏମ୍.ଡ଼ି. ମଧ୍ୟ ସେହି ପ୍ରକାର । ଅର୍ଥାତ୍ ମ୍ୟାନେଜର । କରିତ୍କର୍ମା । ଏହି ଉଚ୍ଚାଙ୍ଗ ସଙ୍ଗୀତର ଆସର ପଛରେ ଉଦ୍ଦେଶ୍ୟ ହେଲା ପ୍ରଚାର କରିବା ଯେ କମ୍ପାନୀ କେବଳ ପଇସା କରିବା ଛଡ଼ା ନିଜର ସାମାଜିକ ଦାୟିତ୍ୱ ବୁଝେ । ଆଗେ ରାଜା ନବାବମାନେ ଯେପରି କଳାକାର ମାନଙ୍କୁ ପୋଷି କଳାକୁ ବଞ୍ଚାଇ ରଖିଥିଲେ, ସେହିପରି ଆଜି କମ୍ପାନୀ ମାନଙ୍କର କରିବା ଉଚିତ । କାରଣ ରାଜାମାନେ ଗଲାପରଠାରୁ ସରକାର ଏ ବିଷୟରେ ଚେଷ୍ଟା କରିଛି । କିନ୍ତୁ ତାହା ନୌକରଶାହୀ ଲାଲଫିତା ଓ ରାଜନୈତିକ ହସ୍ତକ୍ଷେପ ଯୋଗୁଁ ମୋଟେ ସଫଳ ହୋଇନାହିଁ । ଯଦି ଏହା ଅପେକ୍ଷା ପ୍ରାଇଭେଟ୍ ସେକ୍ଟର କଳାର ସତରେ ପୃଷ୍ଠପୋଷକ ହୋଇ ପାରିବ, ତାହେଲେ କମ୍ପାନୀ ମାନଙ୍କର ଭାବମୂର୍ତ୍ତିରେ ଉନ୍ନତି ହେବ । ଅର୍ଥାତ୍ ଯାହା ସରକାର କରିପାରେ ତା ମଧ୍ୟ ଅଧିକାଂଶ କମ୍ପାନୀମାନେ ଢେର ଭଲ କରିପାରନ୍ତି । ଏଇ କଥାଟା

ଅତି ସତର୍ପଣରେ ସମାଜରେ ଯେଉଁମାନେ କି ଦିଗ ନିର୍ଣ୍ଣୟ କରନ୍ତି, ତାଙ୍କ ମୁଣ୍ଡରେ ପୂରେଇ ଦେବାକୁ ହେବ । ଏଥିଲାଗି କାର୍ଯ୍ୟକ୍ରମ ଆରମ୍ଭ ପୂର୍ବ ସମୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏବଂ ରମେଶର ଭୂମିକା ତତୋଧିକ ଗୁରୁତ୍ୱପୂର୍ଣ୍ଣ କାରଣ ସେ ସମୟରେ ଷ୍ଟେସନର ଶଂଟିଂ ଇଂଜିନ ଡବାକୁ ଡ଼ବା ଯୋଡ଼ିଲା ଭଳି ଏମ୍.ଡ଼ି. ଓ ଅନ୍ୟାନ୍ୟ ବିଶେଷ ଲୋକଙ୍କର ଯୋଗାଯୋଗ କରିଦେବ, ଅଥଚ ଏପରି କରିବ ଯେ ସମସ୍ତଙ୍କୁ ଆକସ୍ମିକ ଜଣା ପଡୁଥିବ । ରମେଶ ଏହି କର୍ମରେ ଲାଗିଗଲା । ଯଥା ସମୟରେ ଲାଇଟ୍ ଲିଭିଲା ଓ ପରଦା ଉଠିଲା । ରମେଶ ପଛ ଆଡକୁ ଚାଲି ଯିବାର ଚେଷ୍ଟା କଲା । କିନ୍ତୁ ଏମ୍.ଡି. ତାକୁ ପାଖରେ ବସିବାକୁ କହିଲେ । ଫଳତଃ ରମେଶ ନିଜର ବନ୍ଦୀ ଅବସ୍ଥାକୁ ବାଧ ହୋଇ ଗ୍ରହଣ କରିନେଲା ।

ରମେଶ ଏହି ସବୁ କଠିନ ଅବସ୍ଥା ଲାଗି କେତେକ ମୁଷ୍ଟିଯୋଗ ଆବିଷ୍କାର କରିଛି । ପ୍ରଥମଟି ହେଲା କାନକୁ ଆଙ୍ଗୁଠିରେ ବନ୍ଦ କରି ଗାୟକ ଓ ତବଲା ବାଦକଙ୍କ ମୁଖ ଓ ଅଙ୍ଗଭଙ୍ଗୀ ନିରୀକ୍ଷଣ କରିବା । ତାହା ଅତ୍ୟନ୍ତ ଆମୋଦ ଦାୟକ । କିଛି ସମୟ ପରେ ଆଖିବୁଜି ଗଭୀର ମନୋନିବେଶର ଭଙ୍ଗୀ କରି ଟିକିଏ ଘୁମେଇ ନେବା । ସାଧାରଣତଃ ଏଥିରେ ଅସୁବିଧା ହୁଏ ନାହିଁ । ଜନତାର ତାଳି ଶବ୍ଦ ଶୁଣି ତା ସହିତ ମିଶିଗଲେ ଗାୟକ ବି ସନ୍ତୁଷ୍ଟ । ଯଥା ସମୟରେ ଗାୟନ ଆରମ୍ଭ ହେଲା । କିନ୍ତୁ ଏଥର ଗାୟକଙ୍କର କଣ୍ଠରେ ଏପରି ଏକ ମଧୁର ଆକର୍ଷଣ ଥିଲା ଯେ ତାହା ଶୁଣିବାକୁ ବାଧ କରୁଥିଲା । ଶୀତ ଦିନରେ ରେଜେଇର ଉଷ୍ମ ଶୋଇବା ଲୋକ ଉପରେ ଘୋଟିଗଲା ପରି ଏହି ସ୍ୱରର ବନ୍ୟା ସବୁ ଉପରେ ଛାଇ ହୋଇ ଯାଉଥିଲା । ଏଣୁ ରମେଶ ତାର ମୁଷ୍ଟିଯୋଗ ଛାଡି କେତେକଟା ବାଧ୍ୟ ହୋଇ ଶୁଣିବା ଆରମ୍ଭ କଲା । ନିଜକୁ ସ୍ୱରର ସ୍ରୋତରେ ଭସାଇ ଦେଲା । ମଝିରେ ମଝିରେ ଶୁଣୁ ଶୁଣୁ ଘୁମ ଲାଗିଯାଉଥିଲା । କିନ୍ତୁ ଅଳ୍ପ ସମୟ ପରେ ପୁଣି ତାର ସତ୍ତା ଜାଗ୍ରତ ହୋଇ ଯାଉଥିଲା । ରମେଶ ଅବଶ୍ୟ କଣ ବୋଲା ହେଉଛି, କିଛି ଜାଣି ନଥିଲା । ମଝିରେ ମଝିରେ ସ୍ୱତଃ ନାନା ଛବି ମାନସପଟରେ ଭାସି ଆସୁଥିଲା । ହଠାତ୍ କେତେବେଳେ ବହୁଦିନ ତଳେ ଦେଖିଥିବା ରେଳଗାଡ଼ି ଝରକାରୁ ଏକ ଦୃଶ୍ୟ ଯାହାକି ସମ୍ପୂର୍ଣ୍ଣ ବିସ୍ମୃତ ଥିଲା ବା କେଉଁ ନିମନ୍ତ୍ରଣରେ ଦେଖିଥିବା ସେହି ପରି ବିସ୍ମୃତ ଏକ ନାରୀର ମୁଖଛବି । ଏହିପରି କେତେ ଚିତ୍ର ନିଦ୍ରା ଓ ଜାଗରଣ ମଝି ମଝି ଅବସ୍ଥାରେ ଆସି ଚାଲି ଯାଉଥାଆନ୍ତି ।

ହଠାତ୍ ରମେଶକୁ ମନେ ହେଲା ସେ ମନ ଦେଇ ଶୁଣୁଛି । କାରଣ ଗାୟନରେ ଥିବା ବୋଲ୍ ବା ଶବ୍ଦ ତାର ମନରେ ପ୍ରବେଶ କରୁଛି । ଏବଂ ସେ କଥାର ଅର୍ଥ ବିଷୟରେ ସଚେତନ । ଗାୟକ ତାଙ୍କ ଉଦାର କଣ୍ଠରେ ଗାଉଛନ୍ତି ।

ବୃନ୍ଦନ୍ ଭିଗୋ ମୋରି ସାରୀ<br>
ଅବ ଘର ଜାନେ ଦେ ବନଓ୍ୱାରି

କ୍ରମଶ ଏହା ଶବ୍ଦରୁ ଚିତ୍ରରେ ପରିଣତ ହେଲା । ଗୋଟିଏ ଚଉଦ ପନ୍ଦର ବର୍ଷର ବାଳିକା ଓ ତାଠାରୁ ଟିକିଏ ବଡ଼ ବାଳକ । ଯଦିଚ କବିତା ରାଧାକୃଷ୍ଣଙ୍କ ପ୍ରେମ ପ୍ରତି ଉଦ୍ଦିଷ୍ଟ, ରମେଶ ମଧ୍ୟରେ ସେହିପରି ସ୍ୱାଭାବିକ ଭକ୍ତିଭାବ ନ ଥିବାରୁ ରାଧାକୃଷ୍ଣଙ୍କ ଯାଗାରେ ଦୁଇଟି ସାଧାରଣ କିଶୋର କିଶୋରୀ ତାର ମାନସପଟରେ ଭାସି ଉଠିଲେ । ଠୁମରି ଗାୟକୀ । ଏଣୁ କେତେ ଅନୁରୋଧ, ଅଭିମାନ, ଗୁରୁଜନଙ୍କ ଭୟ ଇତ୍ୟାଦି ଗାୟନରେ ଫୁଟି ଉଠୁଥିଲା । ଏଥର ଆଉ ସଙ୍ଗୀତ ନ ଶୁଣି ଉପାୟ ନାହିଁ । କାରଣ ଏହାପରେ କିଶୋରୀ କିଭଳି ଅନୁନୟ କରିବ ତା ଶୁଣିବା ଲାଗି ଆଗ୍ରହ ହେଉଛି । ଏହିପରି କିଛି ସମୟ ପରେ ଗାୟକ କିଶୋରୀର ବ୍ୟସ୍ତତାର ଆଉ ଏକ କାରଣ ମଧ୍ୟ ହେଲେ ।

ଏକ ଘନ ଗରଜେ, ଦୁଜେ ପବନ ବହେ
ଚିଜେ ନନଦୀ ଦେଗୀ ମୋରେ ଗାରୀ ।

ଅର୍ଥାତ୍ ଏ ଟୋପା ଟୋପା ବର୍ଷା କିଛି ନୁହେଁ । ରିତିମତ ଝଡ଼ ଆସିଛି । ଡ଼େରି କଲେ ନଣନ୍ଦ ବା ଅନ୍ୟ ଗୁରୁଜନଙ୍କ ଠାରୁ କପାଳରେ ଅଜସ୍ର ଗାଳି ଗଂଜଣା । କିନ୍ତୁ ଏ ସବୁ ମନେ ହେଉଥିଲା ଯେପରି ବାହାନା । କିଶୋରୀର ଠିକ୍ ପଳେଇଯିବାକୁ ଇଚ୍ଛା ଥିଲା ପରି ଜଣା ପଡୁ ନଥିଲା । ଯେଉଁଭଳି ସେ ମଧ୍ୟ ଚାହୁଁଥିଲା ଯେ ଏହି ସାନ୍ନିଧ୍ୟ ଆଉ କିଛି ସମୟ ରହୁ । ଯିବାକୁ ହେବ ଏହା ନିଶ୍ଚିତ । କିନ୍ତୁ ଏହାକୁ କଣ ଟିକିଏ ଘୁଞ୍ଚେଇ ଦେଇ ହେବନି ? ଏହି ରସଘନ ମୁହୂର୍ତ୍ତ ଆଉ ଟିକିଏ ରହିବନି ?

ରମେଶକୁ ମନେ ହେଲା ଯେ ସେ କିଶୋର ଯାଗାରେ ସେ ଠିଆ ହୋଇଛି । ପନ୍ଦର ବର୍ଷର ବାଳକ ହୋଇ । ଆଜିକୁ ପନ୍ଦର ବର୍ଷ ତଳେ ତାର ମନର ବିସ୍ମୃତ ପେଡ଼ିରୁ ବାହାରିଲା ଗୋଟିଏ କ୍ଷୁଦ୍ର ଘଟଣା । ରମେଶ ସେ ବୟସରେ ଦୁଷ୍ଟ ଓ ଦୁଃସାହସୀ ଥିଲା । ତେବେ ତା ଭିତରେ ଗୋଟିଏ ରୋମାଣ୍ଟିକ ପ୍ରବୃତ୍ତି ଅଙ୍କୁରିତ ହୋଇ ସାରିଥିଲା । ସେ ମନେ ମନେ କ୍ଲାସର ଗୋଟିଏ ଝିଅକୁ ଭଲ ପାଉଥିଲା । କିନ୍ତୁ ତା ସହିତ କଥାବାର୍ତ୍ତା କରିବାର ସାହସ ନଥିଲା । ବେଳେ ବେଳେ ସେ ଝିଅଟି ସ୍କୁଲରୁ ଫେରିଲା ବେଳକୁ ରମେଶ ତାକୁ ନିରାପଦ ଦୂରତ୍ୱରୁ ଅନୁସରଣ କରୁଥିଲା । ଦିନେ ଏହିପରି ସ୍କୁଲ ଫେରନ୍ତା ହଠାତ ବର୍ଷା ହେଲା । ନିକଟରେ ପୋଷ୍ଟ ଅଫିସ ଥିଲା । ତା ପିଣ୍ଡାରେ ଦଉଡ଼ି ଆଶ୍ରୟ ନେଲେ । ଝିଅଟି ମୁଣ୍ଡ ଓ ମୁହଁ ତାର ଶାଢ଼ି ପଣତରେ ପୋଛିବା ଆରମ୍ଭ କଲା । ସେହି ଦୃଶ୍ୟ ବର୍ତ୍ତମାନ 'ବୁନ୍ଦନ ଭିଗୋ' ଶୁଣିଲା ବେଳକୁ ରମେଶର ଆଖି ଆଗରେ ଭାସି ଉଠୁଛି । ରମେଶକୁ ମନେ ହେଲା ଯେପରି ସେ ତାର କୈଶୋର କିଛି ସମୟ ପାଇଁ ଫେରି ପାଇଛି ।

ପୋଷ୍ଟ ଅଫିସ ବନ୍ଦ ହୋଇ ସାରିଥିଲା । ଏଣୁ ସେଠାରେ ଆଉ କେହି ଲୋକ ନଥିଲେ । ବର୍ଷା ଜୋର ପିଟିବା ଆରମ୍ଭ କଲାଣି । ରମେଶର କଥାବାର୍ତ୍ତା କରିବାକୁ ଇଚ୍ଛା, କିନ୍ତୁ ସାହସ

ପାଉ ନାହିଁ । ଚୁପ୍ ହୋଇ ଠିଆ ହୋଇଛି । କିଛି ସମୟ ପରେ ରମେଶ ସାହସ କରି କହିଲା, 'କେତେବେଳେ ଯାଏ ଠିଆ ହୋଇଥିବା । ଏ ବର୍ଷା ଏଇଲେ ଛାଡ଼ିବ ନାହିଁ । ଅନ୍ଧାର ହୋଇଯିବ । ଚାଲ, ଆଲୁଅ ଥାଉଁ ଥାଉଁ ପଳେଇବା' । ଝିଅଟି କଥାଟାକୁ ଭାବି ଦେଖୁଥିବାର ପରି ଜଣାଗଲା । ତାପରେ କହିଲା 'ଚାଲ ଥାନା ଛକ ଯାକେ ଏକାଠି ଯିବା ।' ଝିଅଟିର ଏହି ସର୍ତ୍ତ ପଛରେ ଯଥେଷ୍ଟ କାରଣ ଥିଲା । ପୋଷ୍ଟ ଅଫିସ ଠାରୁ ଥାନା ଛକ ପର୍ଯ୍ୟନ୍ତ ରାସ୍ତାଟା ନିରୋଳା । ସାଧାରଣ ଏକଲା ଝିଅ ଏ ପାଗରେ ଟିକିଏ ଭୟ କରିବା କଥା । ତା ପରଠୁଁ ଯେ ଯାହାର ବାଟରେ ଘରକୁ ଚାଲିଯିବେ । ଦୁହେଁ ସାହସକରି ବାହାରି ପଡ଼ିଲେ । ଲୁଗା ଭିତରେ ବହିକୁ ନିରାପଦରେ ରଖିବାର ଚେଷ୍ଟା କରି ବର୍ଷାରେ ଭିଜି ଭିଜି ଚାଲିଲେ । ଝିଅଟି ସମ୍ପୂର୍ଣ୍ଣ ଭିଜି ଯାଇଥିଲା । ରମେଶ ପକ୍ଷରେ ଭିଜିବା କିଛି ନୂଆ ନୁହେଁ । କିନ୍ତୁ ବର୍ଷା ଯେପରି ସେ ଝିଅଟିର ଲାଜ ମଧ ଧୋଇ ଦେଇଛି । ରମେଶ ମନରେ ହେଉଥିଲା, ଯେପରି ସେମାନେ ଏହିପରି ଅନନ୍ତକାଳ ଚାଲୁଥାଆନ୍ତେ । କିନ୍ତୁ କାଳ ଶେଷ ହେବାକୁ ବାଧ । ଥାନା ଆସିଗଲା । ଝିଅଟି ତା ରାସ୍ତା ଧରି ଚାଲିଗଲା । ଗଲା ଆଗରୁ ରମେଶକୁ କିଛି କହିଲା ନାହିଁ । କେବଳ ଚାହିଁ ଦେଲା । ସେ ଚାହାଣିରେ ଏକ ସଙ୍ଗରେ ଧନ୍ୟବାଦ, ବିଦାୟ ଓ ଶୁଭେଚ୍ଛା ଯେପରି ମିଶି ରହିଥିଲା । ଝିଅଟି ଚାଲିଯିବା ପରେ ରମେଶର ମନେ ହେଲା ଯେପରି ସେହି ଚାହାଣିଟି ଆକାଶରେ ଘୁରି ବୁଲୁଛି ।

ହଠାତ୍ ତାଳିମାଡ଼ର ଶବ୍ଦରେ ରମେଶର ସ୍ୱପ୍ନ ଭାଙ୍ଗିଗଲା । ହଲରେ ଲାଇଟ ଜଳି ଉଠିଲା । ଗାୟକ ଶ୍ରୋତାମଣ୍ଡଳୀକୁ ନମସ୍କାର କଲେ । ବର୍ତ୍ତମାନ ଧନ୍ୟବାଦ ଦିଆ ହୋଇ ସଭାଭଙ୍ଗ ହେବ । ରମେଶ ତାର ମ୍ୟାନେଜର ରୂପକୁ ଫେରି ଆସିଲାଣି । ସବୁ ସୁରୁଖୁରୁରେ ହୋଇଯାଇଥିବାରୁ ମୁଣ୍ଡରୁ ବୋଝଟାଏ ଗଲାପରି ହାଲୁକା ଲାଗୁଛି । ସେହି ଠୁମରିର କୁହୁକ ଅବଶ୍ୟ ଚାଲିଗଲାଣି । ରମେଶ ତାର ଅନ୍ୟାନ୍ୟ କର୍ତ୍ତବ୍ୟ ଅର୍ଥାତ କର୍ତ୍ତାଙ୍କୁ ଛାଡ଼ିବା, ଅନ୍ୟମାନଙ୍କୁ ଧନ୍ୟବାଦ ଦେବା ଇତ୍ୟାଦି ସାରି ଘରକୁ ବାହାରିଲା । ବାଟରେ ନାଲି ଲାଇଟ ପାଖରେ ଅଟକିଲା । ହଠାତ୍ ମନେ ହେଲା ଯେପରି ସେହି ଚାହାଣିଟି ନାଲି ଲାଇଟ୍ ଭିତରେ ଝଟକୁଛି । ରମେଶ ଗିଅର ପକାଇ ଆଗକୁ ବାହାରିଲା ।



# ଦରବାରୀ କାନାଡ଼ା

ମୋହର ପୂଜ୍ୟପାଦ ପିତୃଦେବ ଅନେକ ସମୟରେ ଏକ ଢଗ କହୁଥିଲେ । ସେଥିର ଅର୍ଥ ବା Moral ହେଲା, ଭାଗ୍ୟ ପ୍ରଧାନ । ଘଟଣା ଘଟୁଛି । ମନୁଷ୍ୟ ନିମିତ୍ତ ମାତ୍ର ଏବଂ ଘଟଣାର ଫଳ ଅପ୍ରତ୍ୟାଶିତ ହୋଇପାରେ । ତାହା ହେଲା ତୁ ଯେବେ ନ ନିଅନ୍ତୁ ସୀତା, ମୋର କି ଲଙ୍କା ଦେଖା ହେନ୍ତା ? ସେହି ପଦ୍ଧତିରେ ମୋତେ ଯଦି ଶନିସପ୍ତା ପଡ଼ି ନଥାଆନ୍ତା, ତାହାହେଲେ ଗିରିଧାରୀ ଲାଲଜୀଙ୍କ ସହିତ ଦେଖା ହୋଇ ନଥାଆନ୍ତା । ଗିରିଧାରୀଲାଲ କଳ୍ପିତ ନାମ, କାରଣ ତାଙ୍କର ପ୍ରକୃତ ନାମ ଦେଲେ ଲୋକେ ତାଙ୍କ ଦୋକାନରେ ଅଯଥା ଭିଡ଼ କରି ପାରନ୍ତି ଏବଂ ଏପରିକି କୌଣସି ପତ୍ରକାର ଇଣ୍ଟରଭିଉ ମଧ ମାଗିପାରେ । ଏପରି ଜିନିଷ ତାଙ୍କ ଧାତୁରେ ଯିବନାହିଁ ଓ ସେ କଷ୍ଟ ପାଇବେ ।

ଆଜିକୁ ପନ୍ଦରବର୍ଷ ତଳେ ମୋର ଭୀଷଣ ଦେହ ଖରାପ ହେଲା ଏବଂ ମାସକରୁ ଊର୍ଦ୍ଧ୍ୱ ହସପିଟାଲ ବାସ ହେଲା । ଏଣୁ ମୋର ଗୁରୁଜନ ମାନେ ମୋର ଜାତକ ଦେଖାଇଲେ ଏବଂ ଆବିଷ୍କାର କଲେ ଯେ ମୋ ଉପରେ ଭୟଙ୍କର ଶନିଦଶା ପଡ଼ିଛି । ଡାକ୍ତରଖାନାରୁ ତ ମୋର କର୍ମବଳ, ଗୁରୁଜନଙ୍କର ଆର୍ଶିବାଦ ଓ ଡ଼ାକ୍ତରମାନଙ୍କ ହେକ୍‌ମତ୍‌ରୁ ଠିକ୍ ଠାକ୍ ବାହାରି ଆସିଲି । ତାପରେ ମୁଁ ମୋର କର୍ମକ୍ଷେତ୍ର ଦିଲ୍ଲୀ ଚାଲିଗଲି । କିନ୍ତୁ ମୋର ମାତୃଦେବୀ ପୂଜା ଇତ୍ୟାଦି ଚାଲୁ ରଖିଲେ କାରଣ ମୋର ଶନିଦଶା ଆହୁରି ଦୁଇ ବର୍ଷ । ମା ଏ ବିଷୟରେ ସ୍ପେସାଲିଷ୍ଟମାନଙ୍କ ସାଥିରେ ଆଲୋଚନା କରିଥିଲେ । ସ୍ପେସାଲିଷ୍ଟଙ୍କ ମତ ହେଲା ଯେ ମୋର ଏକ ନୀଳା ପିନ୍ଧିବା ଦରକାର ଏବଂ ତାହାର ଓଜନ ଅତି କମରେ ନ କ୍ୟାରେଟ୍ ହୋଇଥିବ । ମୋ ପାଖରେ ଘନ ଘନ ତାଗିଦା ଆସି ପହଞ୍ଚିଲା । ମୋ ଜାଣିବାରେ ନୀଳା ବହୁ ମହାର୍ଘ ମଣି । ଦାମରେ ହିରାଠାରୁ ଅଳ୍ପ କମ ହୋଇପାରେ । ଏଣୁ ହଜାରରେ କଥାବାର୍ତ୍ତା । ଶେଷକୁ ମୋ ସହକର୍ମୀ ଓ ଖାଣ୍ଟି ଦିଲ୍ଲୀ ବାସିନ୍ଦା ଗୋପାଳଚନ୍ଦ୍ର ଟିକ୍କୁକୁ ପଚାରିଲି । ଟିକ୍କୁ ପରିବାର ଦିଲ୍ଲୀ ଆସିଛନ୍ତି ଶାହାଜାହାନଙ୍କ ସାଥିରେ । ଏମାନେ ଦିଲ୍ଲୀର ପ୍ରାଚୀନ ବଂଶ ମାନଙ୍କ ସହିତ ଖୁବ୍ ପରିଚିତ, ସେ ହିନ୍ଦୁ ହୁଅନ୍ତୁ ବା ମୁସଲମାନ । ଟିକ୍କୁ ପରିବାର କାହାକୁ ଦେଢ଼ଶହ ବର୍ଷର ସ୍ଥାୟୀ ବାସିନ୍ଦା ନହେଲେ, ଖାନଦାନୀ କହିବାକୁ ନାରାଜ । ତାଙ୍କଠାରୁ ଗିରିଧାରୀଲାଲଜୀଙ୍କର ଠିକଣା ପାଇଲି ।

ଯେଉଁ ପାଠକମାନଙ୍କର ଦିଲ୍ଲୀ ବିଷୟରେ ଧାରଣା ଅଛି ସେମାନେ ଜାଗାଟା ବୁଝିପାରିବେ । ତାହା ହେଲା ଦରିବା କଲାଁ ବା ସଂକ୍ଷେପରେ ଦରିବା । ଲାଲକିଲ୍ଲା ଛକ ଉପରୁ ଚାନ୍ଦନୀ ଚୌକି ଧରି ଯଦି ଗୁରୁଦ୍ୱାରା ଶୀଶଗଂଜ୍ଞ ଆଡକୁ ଯାଆନ୍ତି, ତାହାହେଲେ ଅଳ୍ପ ବାଟ ପରେ ବାଁ ହାତି ଏକ ଗଳି ଯାଇଛି । ଏହା ସେହି ଦରିବା । ମୋଗଲ ସମୟରୁ ଏହା ମଣିମାଣିକ୍ୟର ବଜାର । ପ୍ରାୟ ସମସ୍ତ ବ୍ୟବସାୟୀ ବା ଜୌହରୀ ହେଲେ ଖତ୍ରୀ । ନାଁଟା ଖତ୍ରୀ ହେଲେ ମଧ, ଏମାନେ ଭାରତରେ ଖାଦଦାନୀ ବ୍ୟବସାୟୀ । ଏକ ସମୟରେ ଏହିମାନେ ସମସ୍ତ ମଧ ଏସିଆର ବ୍ୟବସାୟ ନିୟନ୍ତ୍ରଣ କରୁଥିଲେ । ରୁଷିଆର ଆସ୍ତରାଖାନ ସହରରେ ଏମାନଙ୍କର କୋଠି ବା ବ୍ରାଞ୍ଚ ଥିବାର ପ୍ରମାଣ ମିଳେ । ଏମାନଙ୍କ ତୁଳନାରେ ତ ମାରଓ୍ୱାଡ଼ୀ ଜାତି କାଳିକା ଗୋକା । ପ୍ରାୟ ସମସ୍ତେ ଉଜ୍ଜ୍ୱଳ ଗୌର ବର୍ଣ୍ଣ ଏବଂ ସୁଶ୍ରୀ । ଶିଖ ଧର୍ମ ସହିତ ଗଭୀର ଭାବେ ସଂପୃକ୍ତ କାରଣ ଖୋଦ ଗୁରୁ ନାନକ ତ ଖତ୍ରୀ । ତେବେ ଦିଲ୍ଲୀରେ ଖାନଦାନୀ ଖତ୍ରୀମାନେ କେଶଧାରୀ ନୁହନ୍ତି । ଚାନ୍ଦନୀଚୌକଟା ମୂଳରୁ ହିଁ ଖତ୍ରୀଙ୍କର ଜମିଦାରୀ କୁହାଯାଇପାରେ ।

ମୁଁ ଖୋଜି ଖୋଜି ଗିରିଧାରୀଲାଲଙ୍କ ଦୋକାନରେ ପହଞ୍ଚିଲି । ଦୋକାନ ମାନେ ଦଶଫୁଟରେ ଛଅଫୁଟରେ ବାରଣ୍ଡା କହି ପାରନ୍ତି । ଲୁହାର ଜାଲି ଲାଗିଛି । ବଣିଆ ଦୋକାନର କୌଣସି ଲକ୍ଷଣ ନାହିଁ । ଶୋକେଶ ନାହିଁ । ଲୁହା ସିନ୍ଦୁକ ନାହିଁ । ତଳେ ବିଛଣା ଓ ଧଳା ଚାଦର ପଡ଼ିଛି । ମୋଟା ମୋଟା ତକିଆ । କେତେଗୁଡିଏ ସୁନ୍ଦର କଳାକୃତି ଥିବା ପାନଦାନ, ପିକଦାନ ଓ ଆଶ୍‌ଟ୍ରେ ଥୁଆ ହୋଇଛି । ମୁଁ ଗୋପାଳର କଥା କହି ନିଜର ପରିଚୟ ଦେଲି । ତାହାପରେ ମୋତେ ଆଗ୍ରହର ସହିତ, ବସାଗଲା । ଆତିଥେୟତା ଆରମ୍ଭ ହେଲା । ଗିରିଧାରୀଜୀ ଗୌରବର୍ଣ୍ଣ ଦୀର୍ଘକାୟ ଓ କିଂଚିତ୍ ପୃଥୁଳ । କଳା ଧଳା ବାଳ ପଛକୁ ବ୍ୟାକ୍‌ବ୍ରଶ୍ କରା ପରିଧାନ ଧଳା ଢିଲା ପାଇଜାମା ଓ କୁରୁତା । ଶୀତଦିନ ଏଣୁ କ୍ରିମ୍ ରଙ୍ଗର ଜ୍ୟାକେଟ ଓ କାନ୍ଧ ପରେ ବାଦାମି ରଙ୍ଗର ଶାଲ । ଗିରିଧାରୀଜୀ କେବଳ ଏ ବୋଲି ଡାକିଲେ । ତାହା ମଧ ବିଶେଷ ବଡ଼ ପାଟିରେ ନୁହେଁ । ହଠାତ୍ ଆଲ୍ଲାଦୀନ ପ୍ରଦୀପର ଜିନ୍ ପରି ଏକ ଛୋକରାର ଆବିର୍ଭାବ । ତାହାକୁ ସମୋଷା ଓ କଚୌଡ଼ି ଆଣିବାକୁ ହୁକୁମ ହେଲା । ଚାନ୍ଦନୀଚୌକର ଖାସ ଦୋକାନର ସମୋଷା ସହିତ ଶିଂଗଡ଼ାର ତୁଳନା ଉଚିତ ନୁହେଁ । ଏହା ବିଶୁଦ୍ଧ ଘିଅରେ ତିଆରି ଏବଂ ଅତି ଛୋଟ । ସାଙ୍ଗରେ ଖଡ଼ିକା ଯାହାଦ୍ୱାରା କି ଫୋଡ଼ିକରି ଖାଇ ହେବ । ହାତ ଲାଗିବ ନାହିଁ । ସାଥିରେ ପୋଦିନା ଚଟ୍‌ନି ଯେଉଁଥିରେ କି ସମୋଷାଟି ବୁଡ଼ାଇ ଗପ୍ କରି ମୁଖସ୍ଥ କରିହେବ ଏବଂ ଖଡ଼ିକାଟି ଫୋପାଡ଼ି ଦେବେ । ସାଥିରେ ଆସିଲା ଉତ୍କୃଷ୍ଟ ଏବଂ ଗରମ ଗୁଲାବ୍ ଜାମୁନ୍ । ତାହା ପରେ ଚା, ଯେଉଁଥିରେ କେବଳ ଦୁଧ ଥିଲା ପରି ଲାଗୁଥିଲା ଏବଂ ଚା ଛଡା ପୃଥିବୀର ଅନ୍ୟ ସବୁ ଉତ୍କୃଷ୍ଟ ମସଲାର ଖୁସବାଇ ଆସୁଥିଲା ।

ଇତ୍ୟାବସରରେ ମୋର କୁଶଳକ୍ଷେମ, କେଉଁଠି ରହୁଛି, ପିଲାମାନଙ୍କ ଖବର ଇତ୍ୟାଦି ଆଲୋଚନା ହୋଇଗଲା । ଏହା ଭିତରେ ଆଉ ଦୁଇ ତିନି ଜଣ ଆସିଗଲେଣି । ସେଥିରେ ଜଣେ ମଧ୍ୟବୟସ୍କା ମହିଳା ମଧ୍ୟ ଥିଲେ । ମହିଳାଙ୍କର ଗୋଟିଏ ପ୍ରବାଳର ମୁଦି ଓ ବୋହୂର ଏକ ହାରରେ ଗୋଟିଏ ହଳଦିଆ ପୋଖରାଜ ବସାଇବା ଦରକାର । ଅନ୍ୟ ଜଣେ ମଣି ବିକ୍ରୀ କରିବାକୁ ଆସିଛନ୍ତି । କିନ୍ତୁ କେହି ତରବର ନୁହେଁ । ବର୍ତ୍ତମାନ ଆଡ୍ଡା ଜମିଲାଣି । ମହିଳାଙ୍କ ଝିଅର ଦେହ ଭଲ ରହୁନାହିଁ । ତାହା ଉପରେ କିଛି ଆଲୋଚନା ହେଲା । ମହିଳା ଯିବାକୁ ବାହାରିଲେ । ଗିରିଧାରୀଜୀ କହିଲେ, 'ତରବର କାହିଁକି, ଘରେ ଯାଇ କଣ ଚକି ପେଶିବା ଅଛି ?' ମହିଳା ଏହାପରେ ଆସନ ଜମାଇ ବସିଗଲେ ଏବଂ କୌଣସି ଲାଜବନ୍ତୀର ଛୋଟ ବୋହୂର ବ୍ୟବହାର ଉପରେ କିଛି କଟୁ ଆଲୋକପାତ କଲେ ।

ଏହା ପରେ ମୋ କଥା ପଡ଼ିଲା । ମୋର ନୀଳା କଥା କହିବା ସଙ୍ଗେ ସଙ୍ଗେ ଗିରିଧାରୀଜୀ କହିଲେ, 'ଆପଣ କୁଣ୍ଡଳୀ (ଜାତକ) ଆଣିଛନ୍ତି କି ?' ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଗିରିଧାରୀଜୀ କହିଲେ, 'ମୁଁ କାହାକୁ, ବିଶେଷ କରି ଚିହ୍ନା ପରିଚୟ ଲୋକଙ୍କୁ କୁଣ୍ଡଳୀ ନ ଦେଖାଇ ରତ୍ନ ବିକ୍ରି କରିବାକୁ ଚାହେଁ ନାହିଁ ।' ବେପାରି ବା ବଣିଆ କଥା ଅଲଗା । ମୋର ବୟସ ଇତିହାସ କହିଲି । ଗିରିଧାରୀଜି ତାହା ପରେ ବିକ୍ରୀ କରିବାକୁ ରାଜି ହେଲେ କାରଣ ମୋର ଯାହା ସବୁ ହୋଇଥିଲା, ତାହା ପ୍ରାୟ ହିଁ ଶନିସପ୍ତା ପଡ଼ିଲେ ହୁଏ ଏବଂ ଯେହେତୁ ଆମ ଘର ଜ୍ୟୋତିଷ ଜାତକ ଦେଖି ନୀଳା ପିନ୍ଧିବାକୁ କହିଛନ୍ତି, ଅତଏବ କଥାଟା ଠିକ୍ । ତାହାପରେ ସେ ଘର ଭିତରକୁ ଗଲେ ଏବଂ କିଛି ସମୟ ପରେ ଏକ କ୍ଷୁଦ୍ର ଲଫାପା ନେଇ ଆସିଲେ । ତାହା ଭିତରୁ ଟିସୁ କାଗଜରେ ଗୁଡ଼ିଆ ହୋଇଥିବା ଏକ ନୀଳାଭ ପଥର ବାହାର କଲେ । ସେ କହିଲେ 'ଆପଣ ଏହାକୁ ନେଇ ଯାଆନ୍ତୁ । ରାତିରେ ତକିଆ ତଳେ ରଖିବେ । ସକାଳୁ କଣ ସ୍ୱପ୍ନ ଦେଖିଲେ ଟିପିବେ । ସାତଦିନ ଏପରି ରଖିବେ ଏବଂ ତାହା ପରେ ଆପଣଙ୍କର ସ୍ୱପ୍ନର ଟିପା ଏବଂ ଏହି ନୀଳା ନେଇ ଆସିବେ । ତାପରେ ଦେଖିବା ।'

ଏହାପରେ ମୁଁ ନୀଳା ନେଇ ଘରକୁ ଗଲି । ଦୁଃସ୍ୱପ୍ନ ତ ହୋଇ ନଥିଲା । ଏଣୁ ନୀଳା କିଣିବା ସ୍ଥିର ହେଲା । ନୀଳାକୁ ରୁପାର ମୁଦିରେ ବସାଇବା ବିଧି । ଗିରିଧାରୀଲାଲଜୀ ମୋ ଠାରୁ ଯାହା ଦାମ ନେଲେ, ତାହା ମୋତେ ଆଶ୍ଚର୍ଯ୍ୟ କରିଦେଲା । ଗିରିଧାରୀଜୀ କହିଲେ, 'ରତ୍ନ ତ ଆଉ ଲାଉ କଖାରୁ ନୁହେଁ ଯେ ଦିନକୁ ମହଣେ ବିକ୍ରୀ ହେବ ଓ ଗ୍ରାହକ ତାକୁ ପ୍ରତିଦିନ ଖାଇ ଦେଇ ପୁଣି ଆରଦିନ କିଣିବାକୁ ଆସିବ । ଏଣୁ ରତ୍ନ ବ୍ୟବସାୟରେ ପୁଞ୍ଜି ବହୁତ ଦିନ ବନ୍ଦ ହୋଇ ରହେ । ଏହି କାରଣରୁ ଏଥିରେ ଆମେ ଯଥେଷ୍ଟ ଲାଭ ନେବାକୁ ବାଧ । ଗୋଟିଏ ହୀରା ବା ପୋଖରାଜ ମୋ ପାଖରେ ଅନେକ ସମୟରେ ବର୍ଷକ ଲାଗି ପଡିରହେ । ଏଣୁ ବର୍ଷକ ଲାଗି ଯେଉଁ ପୁଞ୍ଜି ବନ୍ଦ ରହିଲା, ତାହାର ତ ଉପଯୁକ୍ତ ଲାଭ

ପାଇବାକୁ ହେବ । ତେବେ ଆପଣ ତ ମୋର ବନ୍ଧୁ ଓକିଲ ସାହେବଙ୍କଠାରୁ ଆସିଛନ୍ତି । ଏଣୁ ଆପଣଙ୍କଠାରୁ ମୁଁ ଖରିଦ ଦାମ ଉପରେ କେବଳ ଶତକଡ଼ା ଦଶ ଲାଭ ନେବି । ଅନ୍ୟ ଗ୍ରାହକ ଲାଗି ଏହାର ଦାମ ଆପଣ ଯାହା ଦେଲେ ତାହାର ଦୁଇଗୁଣ ହୋଇଥାଆନ୍ତା ।' ତାହା ପରେ ଏହାକୁ ପିନ୍ଧିବାର ବିଧି କହିଲେ । ପ୍ରଥମେ ଗଂଗାଜଳ, ତାହାପରେ ପଞ୍ଚାମୃତ ଓ ଶେଷରେ ମହାଦେବଙ୍କର, ପାଦୁକ ପାଣିରେ ଧୁଆ ହେବ । ତାହା ପରେ ଇଷ୍ଟଦେବଙ୍କୁ ସମର୍ପଣ କରି ପୂଜା କରିବେ । ତାହା ପରେ ଧାରଣ କରିବେ ।

ଏହି ପରି କଥାବାର୍ତ୍ତା ମଧ୍ୟରେ ସେ ମୋତେ ଓଡ଼ିଶୀ ସଙ୍ଗୀତ ଓ ନୃତ୍ୟ ବିଷୟରେ କେତେଟା ଟୋଖା ଟୋଖା ପ୍ରଶ୍ନ ପଚାରିଦେଲେ । ମୋର ଆଉ ଏଥିରେ ଇଲମ୍ କେତେ । ତାଙ୍କର ପ୍ରଶ୍ନର ଯଥାସାଧ୍ୟ ଉତ୍ତର ଦେଇ ପରେ ପରେ ମୋର ଜ୍ଞାନର ସୀମିତ ପରିଧି ବିଷୟରେ ସ୍ପଷ୍ଟ କହିଦେଲି । କଥା କଥାରୁ ଜଣାପଡ଼ିଲା ଯେ ଭଦ୍ରଲୋକ କେବଳ ବିଦଗ୍ଧ ନୁହନ୍ତି ଗୁଣୀ ମଧ୍ୟ । ହିନ୍ଦୁସ୍ଥାନୀ ସଙ୍ଗୀତ, ବିଶେଷ କରି ଠୁମରୀ ଗାୟକୀ ଓ କଥକ ନୃତ୍ୟର କେବଳ ରସଜ୍ଞ ନୁହନ୍ତି । ସଚ୍ଚା ସମଝଦାର । ତାଙ୍କର ବ୍ୟକ୍ତିତ୍ୱ ମୋତେ ଆକର୍ଷିତ କଲା । ଏବଂ ଅନେକ ସମୟରେ ତାଙ୍କ ଦୋକାନକୁ ଗପ ସପ କରିବାକୁ ଗଲି । ମନେ ହେଉଥିଲା ଯେ ସେ କେବଳ ରସଜ୍ଞ ନୁହନ୍ତି । ହୁଏତ ସାଧକ ମଧ୍ୟ । ଉର୍ଦ୍ଦୁ ଓ ହିନ୍ଦୀ ଉଭୟ ସାହିତ୍ୟରେ ଗହନ ପ୍ରବେଶ । ଉତ୍ତର ଭାରତର ବିଦଗ୍ଧ ସମାଜର ହିନ୍ଦୁ ମୁସଲମାନ ସମନ୍ୱିତ ସଂସ୍କୃତିର ସେ ଜୀବନ୍ତ ଉଦାହରଣ । କବୀର, ସୁରଦାସ, ମୀରା, ରସଖାନ, ରହୀମ, ବିହାରୀ, ଅନର୍ଗଳ ମୁହଁରୁ ବାହାରୁଛି । ଏବଂ ତାହା ସାଥିରେ ଦିଲ୍ଲୀର ଖାସ୍ କବିଗୋଷ୍ଠି, ଅର୍ଥାତ୍, ମୀର୍, ଗାଲିବ, ଜୌକ୍, ମୋମିନ୍, ଦାଗ୍ ଯେପରି ତାଙ୍କ ନିଶ୍ୱାସ ପ୍ରଶ୍ୱାସରେ ଏବେ ମଧ୍ୟ ଜୀବନ୍ତ । ଥରେ ସେ ଗୋଟିଏ ସଂସ୍କୃତ ଶ୍ଳୋକ ବୋଲିଲେ । ତାହା ପୁଣି ଆକବର ଓ ଜାହାଙ୍ଗୀରଙ୍କର ପ୍ରଧାନ ସେନାପତି ଅବଦୁର ରହୀମ ଖାନ୍‌ଖାନାଙ୍କ ରଚନା । ତାହାକୁ ମୁଁ ଟିପି ନେଇଥିଲି । ଏଣୁ ପାଠକଙ୍କର ସମ୍ମୁଖରେ ଉପସ୍ଥାପନ କରୁଛି । କେବଳ ଜଣେ ନିଷ୍ଠାପର ମୁସଲମାନ ଉଚ୍ଚ ପଦଧାରୀ କୃଷ୍ଣଙ୍କ ଉପରେ ଲେଖିଛନ୍ତି ବୋଲି ନୁହେଁ । ଏଥିରେ ସଂସ୍କୃତ ଭାଷାର ମଧୁର ଓ ବଳିଷ୍ଠ ପ୍ରୟୋଗ ଏବଂ କବି କଳ୍ପନା ଦେଖିବା କଥା । ଏବଂ ଖାନ୍‌ଖାନା ତାଙ୍କର ଯଶ ତାଙ୍କର ତରବାରୀ ଦ୍ୱାରା ହିଁ ଜୀବନକାଳରେ ପାଇଥିଲେ । ଅବଶ୍ୟ ଲେଖନୀର ଯଶ ପରେ ମିଳିଲା ।

ରତ୍ନାକରୋସ୍ତି ସଦନଂ, ଗୃହିଣୀ ଚ ପଦ୍ମା<br>
କିଂ ଦେୟମସ୍ତିଭବତେ ଜଗଦୀଶ୍ୱରାୟ ।<br>
ରାଧା ଗୃହିତ ମନସେ ମନସେଚ୍ଚତୁଭ୍ୟଂ<br>
ଦତ୍ତେମୟା ନିଜ ମନ ସ୍ତଦନଦଂଗୃହାଣ ।

'ହେ ପ୍ରଭୋ, ତୁମର ଘରେ ତ ନିଜେ ରତ୍ନାକର ଅଛନ୍ତି, ପୁଣି ସମସ୍ତ ସମ୍ପଦର ଅଧିକାରିଣୀ ଲକ୍ଷ୍ମୀ (ପଦ୍ମା) ତୁମର ଗୃହିଣୀ । ଏଣୁ ମୁଁ ତୁମକୁ କଣ ସମର୍ପଣ କରିବି ? କିନ୍ତୁ ଭାବି ଦେଖିଲି ଯେ ତୁମଠାରେ ଗୋଟିଏ ଦ୍ରବ୍ୟର ଅଭାବ ଅଛି । ତୁମ ପାଖରେ ମନ ନାହିଁ କାରଣ ତାହା ରାଧା ନେଇ ଯାଇଛନ୍ତି । ଏଣୁ ମୁଁ ମୋର ମନ ତୁମକୁ ସମର୍ପଣ କରୁଛି । ଦୟାକରି ଗ୍ରହଣ କର ।'

ଗିରିଧାରୀଲାଲଙ୍କ ଠାରୁ ଜାଣିଲି ଯେ ଭାରତରେ ରତ୍ନ ବ୍ୟବସାୟ କେଡ଼େ ବିରାଟ । ଭାରତରେ ରତ୍ନର ବିରାଟ ଖଣି ନାହିଁ । ଯାହା ବା ଥିଲା, ତାହା ପ୍ରାୟ ସରିଗଲାଣି । କିନ୍ତୁ ପୃଥିବୀର ରତ୍ନ ବଜାରରେ ଭାରତର ସ୍ଥାନ ଅପ୍ରତିହତ । ତାହାର କାରଣ ଭାରତର ବଂଶପରମ୍ପରା ଅନୁଯାୟୀ ପ୍ରଶିକ୍ଷିତ କାରିଗର ଏବଂ ସେହିପରି ବଂଶ ପରମ୍ପରା ବ୍ୟବସାୟୀ । ଏଣୁ ବିଦେଶରୁ ରତ୍ନ ଆଣି ତାକୁ ଏଠି କାଟି ପାଲିଶ କରି ପୁଣି ବିଦେଶକୁ ରପ୍ତାନୀ କରାଯାଏ । ଏଥିରେ ଗିରିଧାରୀଲାଲ କାମ କରନ୍ତି । ସେଇଟାହିଁ ପ୍ରଧାନ ବ୍ୟବସାୟ । ଦୋକାନଟା ପୁରୁଷାନୁକ୍ରମିକ ରହିଚି ବୋଲି ରହିଛି । ତାହା ଛଡ଼ା ଏହି ଦରିବା ତ ଉତ୍ତର ଭାରତର ପ୍ରଧାନ ରତ୍ନ ବଜାର । ଏଣୁ ଏ ଦୋକାନଟା ପ୍ରଧାନତଃ ଅଫିସ କାମ କରେ । ପୁରୁଣା ଗରାଖଙ୍କ ଗହଣା ଅନ୍ୟ ବଣିଆ ଦ୍ୱାରା ସୁବିଧାରେ କରାଇ ଦିଅନ୍ତି । କିନ୍ତୁ ତାହା ଆଉ ତାଙ୍କର ବ୍ୟବସାୟ ନୁହେଁ । ବ୍ୟବସାୟ କେବଳ ରତ୍ନର କାରବାର । ସେ ସବୁ ତ ହେଲା । କିନ୍ତୁ ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା ଯେ ସଂଗୀତ ଓ ସାହିତ୍ୟର ବିଶେଷ କରି ସଙ୍ଗୀତରେ ଏତେ ଗଭୀର ପ୍ରବେଶ ଥିବା ଲୋକ କଳାକାର ନହୋଇ ବ୍ୟବସାୟୀ କିପରି ହେଲା ।

ପୁରୁଣା ଦିଲ୍ଲୀର ଏକ ପଡ଼ାର ନାମ ବଜାର ସୀତାରାମ । ଏଠି ବହୁ ପୁରୁଣା ଖାନ୍ଦାନୀ ହବେଲୀ । ପଡ଼ାଟା ପ୍ରଧାନତଃ କାଶ୍ମିରୀ ପଣ୍ଡିତ ଅର୍ଥାତ ବ୍ରାହ୍ମଣ ମାନଙ୍କର । ଅବଶ୍ୟ ଖତ୍ରୀ, କାୟସ୍ଥ ଆଦି ମଧ ଅଛନ୍ତି । ସେଠି ଜଣଙ୍କ ଘରେ ନିମନ୍ତ୍ରଣ ଥିଲା । ଆକର୍ଷଣ ଥିଲା ଯେ ଜଣେ ପ୍ରସିଦ୍ଧ ସରୋଦବାଦକ ସେଠି କିଛି ଘରୋଇ ଭାବରେ ଶୁଣାଇବେ । ନିମନ୍ତ୍ରିତ ମାତ୍ର ଦଶବାର ଜଣ । ତାହା ଭିତରେ ମୁଁ କିପରି ଆସିଗଲି ତାହା ମୁଁ ଏବେ ମଧ ବୁଝି ନାହିଁ । ଯାହା ହେଉ ସେଠି ଗିରିଧାରୀଲାଲ ମଧ ଥିଲେ । ସରୋଦ ଯନ୍ତ୍ରଟାର ଏକ ଯାଦୁ ଅଛି । ଆପଣ ସଙ୍ଗୀତର ଗହନ ତତ୍ତ୍ୱ ବୁଝନ୍ତୁ ବା ନ ବୁଝନ୍ତୁ, ତାହାର ଉଦାତ୍ତ ଏବଂ ଗମ୍ଭୀର ସ୍ୱରର ବନ୍ୟାରେ ଆପଣ ବୁଡ଼ି ଯିବାକୁ ବାଧ । ସେଦିନର କଳାକାର ଅତି ପ୍ରସିଦ୍ଧ । କଣ ଶୁଣେଇଲେ ଏଠି ତାହାର ଆଲୋଚନା ହେଉନାହିଁ ବା ତାହା କରିବାର ବିଦ୍ୟା ମୋଠାରେ ନାହିଁ । କିନ୍ତୁ ଗୋଟିଏ ଜିନିଷ ଲକ୍ଷ୍ୟ କଲି । ଏକ ସମୟରେ କଳାକାର ଦରବାରୀ କାନାଡ଼ା ବଜାଉଥିଲେ ଏବଂ ଦେଖିଲି ଯେ ଗିରିଧାରୀଲାଲଜୀ ଆଖି ପୋଛିଲେ । ତାଙ୍କ ଆଖିରୁ ଲୁହ ଗଡ଼ି ପଡୁଥିଲା ।

ଆସର ଭାଙ୍ଗିଲା ପ୍ରାୟ ରାତି ଦୁଇଟାରେ । ମୁଁ ଓ ଗିରିଧାରୀଲାଲ ଏକାଠି ବାହାରିଲୁ । ଗିରିଧାରୀଲାଲଙ୍କ ଘର ବେଶି ଦୂର ନୁହେଁ । ଏଣୁ ଚାଲିକରି ଯାଉଥିଲୁ । ମୁଁ ମଧ୍ୟ ଗିରିଧାରୀଲାଲଙ୍କ ଘର ପାଖରୁ ଅଟୋରିକ୍‌ସା ଘରକୁ ଯିବା ଲାଗି ପାଇଯିବି । ଏହି ଅବସରରେ ଆସରର ଆଲୋଚନା କରୁ କରୁ ଗିରିଧାରୀଲାଲଙ୍କୁ ତାଙ୍କର କାନ୍ଦୁଥିବା କଥା ପଚାରିଦେଲି । ହୁଏତ ନ ପଚାରିଥିଲେ ଭଲ ହୋଇଥାଆନ୍ତା ।

ସେ ମୋତେ ପଣ୍ଡିତଜୀ ଡାକନ୍ତି କାରଣ ମୁଁ ଜାତିରେ ବ୍ରାହ୍ମଣ । ଗିରିଧାରୀଲାଲ କହିଲେ, 'ପଣ୍ଡିତଜୀ, ମୁଁ ଆତ୍ମହତ୍ୟା କରିଛି । ପ୍ରକୃତ ଗିରିଧାରୀଲାଲକୁ ମୁଁ ହତ୍ୟା କରିଛି । ତାହାର ଶୋକରେ ସେତେବେଳେ ଆଖିରୁ ଲୁହ ବାହାରି ଯାଇଥିଲା । ସେ ଗିରିଧାରୀର ବଡ଼ ପ୍ରିୟ ଥିଲା ଦରବାରୀ କାନାଡ଼ା । ଆଜି ବହୁତ ଡ଼େରି ହେଲାଣି, ଘରକୁ ଯାଆନ୍ତୁ । ପରେ କେଉଁଦିନ ଶୁଣିବେ ।'

ଏହା ପରେ କଥାଟା ଆସ୍ତେ ଆସ୍ତେ ତାଙ୍କଠାରୁ ବାହାରି ଥିଲା । ସବୁଟା ତାଙ୍କଠାରୁ ନୁହେଁ । କିଛିଟା ମୋର ବନ୍ଧୁ ଗୋପାଳ ଟିକୁର ବଡ଼ଭାଇଙ୍କ ଠାରୁ । ବିଶେଷ କରି କେତେକ ଶୂନ୍ୟସ୍ଥାନ ପୂରଣ ଲାଗି । ଗିରିଧାରୀଲାଲଙ୍କ ଘରେ ସବୁବେଳେ ସଙ୍ଗୀତ ଚର୍ଚ୍ଚା ଥିଲା । ତାଙ୍କର ପିଲାଦିନୁ ଏଥିରେ ଶଉକ ଏବଂ ଆଗ୍ରହ । ଲାଗି ପଡ଼ି ଶିଖିଲେ । କଣ୍ଠ ସଙ୍ଗୀତ ହିଁ ତାଙ୍କର ବେଶି ପ୍ରିୟ ଥିଲା । ଭଲ ଭଲ ଉସ୍ତାଦଙ୍କ ପାଖେ ଶିଖି ବେଶ କୃତିତ୍ୱ ହାସଲ କରି ସାରିଥିଲେ । ଅନେକ ମଧ୍ୟମ ଧରଣର ସଙ୍ଗୀତ ସଭାରେ ସ୍ୱୀକୃତି ପାଇ ସାରିଥିଲେ । ବର୍ତ୍ତମାନ ସେ ଏକ ଅତି ନାମଜାଦା ଉସ୍ତାଦଙ୍କ ଶାଗିର୍ଦ୍ଦ । ସମସ୍ତେ ଆଶା କରୁଥିଲେ ଯେ ଅଳ୍ପଦିନ ଭିତରେ ସେ ସର୍ବଭାରତୀୟ ସ୍ୱୀକୃତି ପାଇଯିବେ । କିନ୍ତୁ ବାପା ବୃଦ୍ଧ ଓ ସେ ଏକମାତ୍ର ପୁତ୍ର । ଏଣୁ ବ୍ୟବସାୟ ମଧ୍ୟ ଦେଖିବାକୁ ହେଉଛି । ବ୍ୟବସାୟ ଲାଗି ଅନେକ ସମୟରେ ବାହାରେ ରହିବାକୁ ପଡୁଥିଲା । ଖାସକରି ଜୟପୁର, ବମ୍ବେ ଓ ସୁରାଟ୍ ତ ବାରମ୍ବାର ଦଉଡ଼ିବାକୁ ପଡୁଥିଲା । ବ୍ୟବସାୟ ଉପରେ ମଧ୍ୟ ବେଶ ଦଖଲ ଆସିଗଲାଣି । ଦିନେ ଉସ୍ତାଦ୍‌ଜୀ ପାଖରେ ବସାଇ ତାଙ୍କୁ କହିଲେ, 'ଦେଖ୍ ବେଟା, ଲକ୍ଷ୍ମୀ ଓ ସରସ୍ୱତୀ ପ୍ରକୃତରେ ସଉତୁଣୀ । ଏମାନେ ଗୋଟିଏ ସ୍ତର ପର୍ଯ୍ୟନ୍ତ ଏକାଠି ରହିପାରନ୍ତି । ଯେପରି ତୋର ବର୍ତ୍ତମାନ ଅବସ୍ଥା । କିନ୍ତୁ ଗୋଟିଏ ସମୟ ଆସେ ଯେଉଁଥିରେ ତାଙ୍କ ମଧ୍ୟରୁ ଜଣକୁ ବାଛିବାକୁ ହେବ । ଦୁହେଁ ପରସ୍ପର ପ୍ରତି ବଡ଼ ଅସହିଷ୍ଣୁ । ଆଉ ତୁ ଦୁହିଁଙ୍କର ସେବା ଏକାଠି କରି ପାରିବୁ ନାହିଁ । ମୁଁ ତୋର ଖବର ରଖିଛି । ଲକ୍ଷ୍ମୀଜୀ ତୋର ସମସ୍ତ ସମୟ ମାଗୁଛନ୍ତି । ବର୍ତ୍ତମାନ ତୁ ଯାହା ଶିଖିଲୁଣି, ଏଥିରେ ଆଗକୁ ସଙ୍ଗୀତ ସାଧନା କରିବାକୁ ହେଲେ, ସରସ୍ୱତୀଙ୍କୁ ସମସ୍ତ ସମୟ, ସମସ୍ତ ଜୀବନ ଦେବାକୁ ହେବ । ଏଣୁ ତୁ ବାଛ, କାହାର ସାଧନା କରିବୁ ।'

ପ୍ରାୟ ପନ୍ଦର ଦିନ ବଡ କଷ୍ଟରେ କଟିଲା । କେଉଁ ଆଡ଼କୁ ଯିବେ ? ମନ ଡାକୁଛି

ସରସ୍ୱତୀଙ୍କ ସାଧନା କରିବାକୁ । କିନ୍ତୁ ବୃଦ୍ଧ ପିତା, ସେ ଏକମାତ୍ର ପୁତ୍ର । କେତେ ପୁରୁଷର ବ୍ୟବସାୟ । ପୁଣି ତାଙ୍କ ଉପରେ କେତେ ନିର୍ଭର କରୁଛନ୍ତି । ଏହା ଭିତରେ ବ୍ୟବସାୟରେ କେତେକ ଘଟଣା ଘଟିଗଲା । ଖବର ପାଇଲେ ସେ ତାଙ୍କର କେତେକ ପ୍ରତିଦ୍ୱନ୍ଦୀ ବ୍ୟବସାୟୀ ଗୋଷ୍ଠି ତାଙ୍କ ବ୍ୟବସାୟ ମାଡ଼ି ବସିବାକୁ ଚକ୍ରାନ୍ତ କରୁଛନ୍ତି । ଏକ ଯୁଦ୍ଧ ପରିସ୍ଥିତି ହୋଇଗଲା । ଶେଷକୁ ଗିରିଧାରୀଜୀ ଜିତିଲେ ଏବଂ ଫଳତଃ ପ୍ରତିଦ୍ୱନ୍ଦୀଙ୍କର କେତେକ କାରବାର ଉପରେ ନିଜେ ଅଧିକାର କରିଗଲେ । ଏହି ଯୁଦ୍ଧରେ ଗିରିଧାରୀ ଜିଣିଲେ ସତ କିନ୍ତୁ ସେତେବେଳକୁ ଗିରିଧାରୀଙ୍କୁ ଲକ୍ଷ୍ମୀ ସମ୍ପୂର୍ଣ୍ଣ ଅଧିକାର କରି ସାରିଲେଣି । ଯେଉଁ ଗିରିଧାରୀଟି ସରସ୍ୱତୀଙ୍କ ବରପୁତ୍ର ଥିଲା, ସରସ୍ୱତୀଙ୍କ ସାଧକ ଥିଲା, ତାର ମୃତ୍ୟୁ ହୋଇଗଲା ।

ଏଣୁ ଏବେ ମଧ୍ୟ ଲକ୍ଷ୍ମୀଙ୍କ ବରପୁତ୍ର ସେହି ସରସ୍ୱତୀଙ୍କ ବରପୁତ୍ର ଲାଗି ବେଳେବେଳେ କାନ୍ଦେ । ବିଶେଷ କରି ଦରବାରୀ କାନାଡ଼ା ଶୁଣିଲେ ।



# ବହ୍ନି ଶିଖା

ମୁଁ ପ୍ରକୃତିଗତ ଆଡ୍ଡାବାଦ । କିନ୍ତୁ ମନଲାଖି ଆଡ୍ଡାଟିଏ ମିଳିବା ପୂର୍ବଜନ୍ମର ସୁକୃତିର ଫଳ । ଏଣୁ ସେହି ସୁକୃତି ବଳରେ ଦିଲ୍ଲୀରେ ଏକ ଖାନଦାନୀ ଆଡ୍ଡାରେ ଶରିକ ହୋଇ ଯାଇଥିଲି । ତାହା ଟି ହାଉସ୍ ବୋଲି ଏକ ରେସ୍ତୁରାଁରେ ହେଉଥିଲା । କନଟ୍ ପ୍ଲେସ୍‌ରେ ରିଗାଲ ବିଲ୍ଡିଂରେ ପାର୍ଲିଆମେଣ୍ଟ ଷ୍ଟ୍ରିଟ୍ କଡରେ ଏହି ରେସ୍ତୋରାଁ । ଅତ୍ୟନ୍ତ ଖାନଦାନୀ ହେଲେ ମଧ ଏହା ଦିଲ ଦରିଆ ଯାଗା । ବିରାଟ ହଲ । ଏକାଠି ଶହେ ଦେଢଶହ ଲୋକ ବସିଯିବେ । ଏଠି କିଛି ବ୍ୟସ୍ତତା ଚଞ୍ଚଳତା ନାହିଁ । ନଡାକିବା ପର୍ଯ୍ୟନ୍ତ ଓଏଟର ଆସିବ ନାହିଁ । ତେବେ ଏଠାର ଖାଇବା ମନେ ପଡିଲେ ଏବେ ମଧ ମୁଖଗହ୍ବର ଲାଳାୟିତ ହୁଏ । ଅତି ଉତ୍ତମ ହଟ୍‌ଡଗ୍ (Hot Dog) ଓ ହାମ୍‌ବର୍ଗର Hamberger) ତ ଥିଲା । ତାହା ଛଡ଼ା ତାହାର କେତେକ ନିଜସ୍ୱ ଅବଦାନ ଥିଲା । ଯଥା କିମା ଦୋଷା, ଗୋଟିଏ ସମ୍ପୂର୍ଣ୍ଣ ଭୋଜନ । ଆମର ଆଡ୍ଡା କାଉଣ୍ଟରଠାରୁ ବାଁ ଦିଗରେ ଗୋଟିଏ ଛଜଣିଆ ଟେବୁଲ ଉପରେ ବସୁଥିଲା । କଦାଚିଦ ଯଦି ଆଡ୍ଡାର ସମସ୍ତ ବା ଅଧିକାଂଶ ସଦସ୍ୟ ମଧ ଏକାଠି ଆସିଗଲେ, ତେବେ ଗୋଟିଏ ଚଉକିରେ ଦୁଇଜଣ ବସିବାକୁ ପଡ଼ିବ । କିନ୍ତୁ ଆଡ୍ଡାଧାରୀଗଣ କଦାପି ଅନ୍ୟ ଟେବୁଲକୁ ଯିବେ ନାହିଁ । ତାହା ମହାପାପ ମଧରେ ଗଣ୍ୟ । ଏକପ୍ରକାର ଗୋହତ୍ୟା, ବ୍ରହ୍ମହତ୍ୟା ।

ଏହି ଆଡ୍ଡାର କେନ୍ଦ୍ରବିନ୍ଦୁ ହେଲେ ଗାଗା, ନାମ ହରକିଶନ ତଲଓ୍ୱାର୍ । ଆଶ୍ଚର୍ଯ୍ୟ ହୁଅନ୍ତୁ ନାହିଁ । ତଲଓ୍ୱାର ପଂଜାବରେ ସଂଜ୍ଞା ମଧ ହୁଏ । ଅବଶ୍ୟ ଅଧିକାଂଶ ତଲଓ୍ୱାର ମାନଙ୍କର ଖଣ୍ଡା ତରୁଆଲ ସହିତ କୌଣସି ସମ୍ପର୍କ ନାହିଁ । ବୟସ ପ୍ରାୟ ଚାଳିଶ । ସୁପୁରୁଷ । ଛଫୁଟ ଲମ୍ବା ଓ ତାହା ଉପରେ ଆଉ ଫୁଟେ ଲମ୍ବ ପଠାନ ପଗଡ଼ି । ଗାଗା ଅବଶ୍ୟ କୋଟ ପ୍ୟାଣ୍ଟ ଟାଇ ଇତ୍ୟାଦି ପିନ୍ଧନ୍ତି । କିନ୍ତୁ ପଠାନ ପଗଡି ଛାଡ଼ି ନାହାନ୍ତି । ଆପଣମାନେ କେବଳ ଶିଖ ମାନଙ୍କର ପଗଡ଼ି ଦେଖିଛନ୍ତି । ହୁଏତ କେହି ରାଜପୁତ ସାଫା ମଧ ଦେଖି ଥାଇ ପାରନ୍ତି । କିନ୍ତୁ ଅସଲ ପଗଡ଼ି ହେଲା ପଠାନ ପଗଡ଼ି । ତାକୁ ଦେଖି ମନେ ହୁଏ ଯେପରି ଭଗବାନ

ମୁଣ୍ଡଟାକୁ ଏହି ପଗଡ଼ି ପିନ୍ଧିବାକୁ ହିଁ ସୃଷ୍ଟି କରିଛନ୍ତି । ପଗଡ଼ିର ତିନିଟା ଅଂଶ । ପ୍ରଥମ କୁଲ୍ଲା । ତାହା ଏକ ମଖମଲ ଟୋପି ଯାହା ଉପରେ ସୁନେଲି ବା ରୁପେଲି କାମ ହୋଇଥିବ । ତାହା ଚାରିପଟେ ମଲମଲ କନାର ପଗଡ଼ି ବନ୍ଧା ଯିବ ଏବଂ ପଗଡ଼ିର ଏକ ଅଂଶ ଖୁବ୍ କଲଫ ଦିଆ ହୋଇ ଟାଣ ଥିବ ଏବଂ ତାହା କୁକୁଡାର ଚୂଳ ପରି ଏକ ଗିରିଶୃଙ୍ଗ ସୃଷ୍ଟି କରିବ । ଏହାର ନାମ ତୁର୍ରା । ଗଟା ବୃଷସ୍କନ୍ଧ । ତାହା ଉପରେ ଏହି ଶିରଃତ୍ରାଣ । ପୁଣି ମୋଡା ହୋଇଥିବା ଏକ ବାଦଶାହୀ ନିଶ । ଏଣୁ ଗଟା ପଶି ଆସିଲେ ମନେ ହେବ ସତରେ କିଏ ଆସିଗଲେ । ଶ୍ରୀକୃଷ୍ଣଙ୍କ ରୂପ ତ କେହି ଦେଖିନାହିଁ । କିନ୍ତୁ ଗଟାଙ୍କୁ ଦେଖିଲେ ମନେ ହୁଏ ହିଁ ଏଇ ଯେ ଗୋଟାଏ ନରଶାର୍ଦ୍ଦୁଳ । ସତୀଧୃତିଧନ ଚୋର । କିନ୍ତୁ ଗଟାଙ୍କ ଧୃତି କେହି ଚୋରାଇ ପାରିନାହିଁ । ଗଟା ଅବିବାହିତ । ଗଟା ଯେ ଠିକ୍ କଣ କରନ୍ତି କହିବା ମୁସ୍କିଲ । ସେ କହନ୍ତି ଯେ ସେ ଜଣେ ବିଜିନେସମ୍ୟାନ ଯେ କି କେବେ ବିଜି (Busy) ନୁହେଁ । ତେବେ ବେଶ ଭଲ ଚଳନ୍ତି । ପୋଷାକ ପତ୍ର ଛିମ୍ ଛାମ୍ । ଖଣ୍ଡେ ମଟର ଗାଡ଼ି ମଧ ଅଛି । ଆମେ ଜାଣିବାରେ ଏକ ଟ୍ରାନ୍ସପୋର୍ଟ କମ୍ପାନୀରେ ଅଂଶିଦାର ଏବଂ ପ୍ରପଟି ଡିଲର୍ । ଗଟା ନାନା ଧନ୍ଦାରେ ବ୍ୟସ୍ତ । କିନ୍ତୁ ସବୁବେଳେ ସମୟ ଅଛି । ଯେ କେହି ତାହାର ସମସ୍ୟା ଆଣିଲେ ସେ ତାହା ଧୈର୍ଯ୍ୟ ଧରି ଶୁଣିବେ ଓ ଉପାୟ ବତାଇବେ ।

ଗଟା ଏକ ଚଳନ୍ତି ଏନ୍‌ସାଇକ୍ଲୋପିଡ଼ିଆ । ସବୁ ଖବର ଓ ଅଖବର ବିଷୟରେ ଓ୍ୟାକିଫ୍‌ହାଲ୍ । ଘର ଖୋଜା, ଗାଡ଼ି କିଣା, ବିବାହ ପ୍ରସଙ୍ଗ ସବୁଥିରେ ସେ ସାହାଯ୍ୟ କରି ପାରନ୍ତି ଓ କରନ୍ତି ମଧ । ତାହା ଛଡ଼ା ଆଡ୍ଡାରେ ନାନା ଆଲୋଚନାର ସେ ହେଲେ ଶେଷ କଥା । The last word. ହୁଏତ କୌଣସି ଘଟଣାର ବର୍ଣ୍ଣନ ଦେଇ ବା ଏକ ଜୁତ୍‌ସହି ଉର୍ଦ୍ଦୁ ଶେର୍ ବା ରୁବାଇ କହି ସମସ୍ତ ଆଲୋଚନାର ମୁଣ୍ଡି ମାରି ଦିଅନ୍ତି । ଏକ ନିଷ୍କର୍ଷ ବା conclusion ଆସିଯାଏ । ଗଟାଙ୍କ ପୂର୍ବାଶ୍ରମ ବିଷୟରେ ଆମ୍ଭେମାନେ କିଛି ଜାଣିନାହୁଁ । କେବଳ ଏତିକି ଯେ ସେ ରାଓ୍ୱଲ୍‌ପିଣ୍ଡୀ ବାସିନ୍ଦା ଓ ଦେଶ ବିଭାଜନ ସମୟରେ ସେ ତାଙ୍କର ପରିବାରଙ୍କଠାରୁ ବିଚ୍ଛିନ୍ନ ହୋଇଗଲେ । ଭାରତରେ ବହୁ ଖୋଜ ଖବର ନେବାରେ କିଛି ଜଣା ପଡିଲା ନାହିଁ । ଏଣୁ ମୃତ ବୋଲି ଧରାଯାଇପାରେ । Presumed Dead, ଗୋଟିଏ ବିବାହିତା ଭଉଣୀ ତାର ଶଶୁର ଘର ପରିବାର ସହିତ ଭାରତ ଆସି ପାରିଥିଲା । ମା, ବାପା, ଦୁଇ ଭାଇ ଓ ଗୋଟିଏ ଭଉଣୀ ସେହି ରକ୍ତନଦୀ ସନ୍ତରଣ କରିପାରିନଥିଲେ । ତେବେ ଏଥିରେ ନୂତନତ୍ୱ କିଛି ନାହିଁ । ଏହିପରି ବହୁତଙ୍କ ସହିତ ହୋଇଛି । ଗଟା ମଧ ସେହି ବିଷୟରେ କେବେ ଆଲୋଚନା କରନ୍ତି ନାହିଁ । ବେଶି ଚାପ ପଡିଲେ କେବଳ ଏତିକି କହନ୍ତି ।

ଯୋ ଖିଜାଁ ନାଦୀଦା ହୋହା ବୁଲ୍‌ବୁଲ୍ ଓ୍ୟହ ବୁଲ୍‌ବୁଲ୍ ହି ନହାଁ ।

ଅର୍ଥାତ୍, ଯେଉଁ ବୁଲ୍‌ବୁଲ୍ କେବଳ ବସନ୍ତର ପୁଷ୍ପିତ ଉପବନ ଦେଖିଛି । ଶିଶିରର ପତ୍ରଶୂନ୍ୟ ରିକ୍ତତା ଦେଖିନାହିଁ ସେ ବୁଲବୁଲ ହିଁ ନୁହେଁ ।

ଆମର ଜଣେ ଖୁବ୍ ପରିଚିତ ଭଦ୍ରଲୋକଙ୍କର ଏକ ମର୍ମନ୍ତୁଦ ଦୁର୍ଘଟଣା ହୋଇଗଲା । ତାଙ୍କର ସ୍ତ୍ରୀଙ୍କର ମୃତ୍ୟୁ ହୋଇଗଲା । ମହିଳା ଦୁରାରୋଗ୍ୟ ରୋଗରେ ପୀଡ଼ିତା ଥିଲେ । ଏଣୁ ସେହି ମୃତ୍ୟୁ ଅପ୍ରତ୍ୟାଶିତ ନଥିଲା । କିନ୍ତୁ ସେହି ଘଟଣାର ପ୍ରାୟ ସପ୍ତାହ ମଧ୍ୟରେ ସେହି ଭଦ୍ରଲୋକଙ୍କ ପ୍ରୋମୋଶନ ହୋଇ ଲଣ୍ଡନ୍‌ରେ ପୋଷ୍ଟିଂ ହେଲା । ଏଥିଲାଗି ଭଦ୍ରଲୋକ ଲାଳାୟିତ ନଥିଲେ । ଏଇଟା ମଧ୍ୟ ଏକ ପ୍ରକାର ତାଙ୍କର ହକ୍ ଥିଲା ଓ ବର୍ଷକ ଆଗରୁ ହେବା ଉଚିତ ଥିଲା । ଠିକ୍ ସମୟରେ ପାଇଥିଲେ ସ୍ତ୍ରୀଙ୍କର ଲଣ୍ଡନରେ ଉପଯୁକ୍ତ ଚିକିତ୍ସା କରି ପାରିଥାଆନ୍ତେ । ଏଣୁ ଏହିପରି ହେବାଟା ନିୟତିର ପରିହାସ । ପରିହାସ ବିଷୟରେ ନାନା ଘଟଣା ବିଷୟରେ ଆଲୋଚନା ହେଉଥିଲା । କିନ୍ତୁ ଦେଖିଲୁ ଯେ ଟାଟା କିପରି ମନମରା ହୋଇ ଗୁମ୍ ମାରି ବସି ଯାଇଛନ୍ତି । ଟାଟାଙ୍କର ନୀରବତା ହିଁ ଆମ ପକ୍ଷରେ ଅସ୍ୱସ୍ତିକର, ଏକପ୍ରକାର କଣ୍ଠରୋଧ କଲା ପରି । ଟାଟା ଯେ ବହୁତ ବେଶି କହନ୍ତି ତାହା ନୁହେଁ ତେବେ ମଝିରେ ମଝିରେ ତାଙ୍କର ମନ୍ତବ୍ୟଟିଏ ବା ପ୍ରଶ୍ନଟିଏ କଥାରେ ଏକ ଅଦ୍‌ଭୁତ ଗତିଶୀଳତା ଆଣିଦିଏ । ଆଜି ଟାଟାଙ୍କର ଏହି ନୀରବତା ଆଡ୍ଡା ଉପରେ ପଥର ବୋଝ ପରି ଲଦି ହୋଇ ଯାଇଛି ।

ମୁଁ ରହିପାରିଲି ନାହିଁ । ପଚାରିଲି 'ଟାଟା, ଏ ନୀରବତା କାହିଁକି ? ଘଟଣା କଣ ? ତୁମର ନୀରବତା ଯେ ଆମ ଉପରେ ବୋଝ ହୋଇ ଗଲାଣି ।'

ଟାଟା ସମସ୍ତଙ୍କ ମୁହଁକୁ ଚାହିଁଲେ । ତାହାପରେ କହିଲେ, ଯାହା ହୋଇଯାଇଛି ତାହା ତ ମୋତେ ପେଷି ଦେଇଛି । ତାହା କହିହୁଏନି । ସହି ହୁଏନି । ତଥାପି ସହିବାକୁ ହୁଏ ।

ଆମେ ସମସ୍ତେ ଟାଟାଙ୍କୁ ଧରିଲୁ, 'ଟାଟା, ତମ ମନର ବୋଝ ପ୍ରକାଶ କର । ଆମକୁ କୁହ ହୁଏତ ତାହାର ଉପଚାର ଆମ ଶକ୍ତିର ବାହାରେ । କିନ୍ତୁ କହିଲେ ତୁମ ମନର ବୋଝ ହାଲ୍‌କା ହେବ ।' ଟାଟା କହିଲେ, 'ବୋଧହୁଏ ତାହାହିଁ ଠିକ୍ । ଯାହା ହୋଇଛି ତାହା ତ ହୋଇଯାଇଛି । ଗାଲିବ୍ ଠିକ୍ କହିଛନ୍ତି :-

ତୁମ୍‌କୋ ଭୀ ହମ୍ ଦିଖଲାତେ କି ମଜନୁଁନେ କ୍ୟା କିୟା
ଫୁରସତ୍ କଶାକଶେ-ଗମେ-ପିନାହା ସେ ଗର ମିଲେ ।

(ଅର୍ଥାତ୍ ମଜନୁ ଲୈଲାର ପ୍ରେମରେ ପାଗଳ ହୋଇ ବୁଲିଲା । ସେଇଟା ଏପରି କି ବଡ଼ କଥା ? ଯଦି ମୋତେ ଦୁଃଖକୁ ଗୁପ୍ତ ରଖିବାର କଷ୍ଟରୁ ଉଦ୍ଧାର ମିଳନ୍ତା ତ ମୁଁ ମଧ୍ୟ ନିଜର ବ୍ୟଥା ସଂସାରକୁ ଜଣାଇ ପାରନ୍ତି । ମୋର କଷ୍ଟ ମଜନୁର କଷ୍ଟଠାରୁ ଢ଼େର ବେଶି)

ଏହାପରେ ଟାଟା ତାଙ୍କ କାହାଣୀ ଆରମ୍ଭ କଲେ ।

ଏହି ଭାଗ୍ୟ ଜିନିଷଟା ହିଁ ମହା ବଦମାଶ । ତୁମେ ଅମୃତଲାଲ ବିଷୟରେ ଯାହା କହିଲ ସେଇଟା ଏପରି କିଛି ବିଚିତ୍ର କଥା ନୁହେଁ । ଭାଗ୍ୟ ସବୁବେଳେ ମଣିଷକୁ ଉପହାସ କରୁଥାଏ । ଯାହା ପ୍ରତି ତାହାର କିଛିଟା ଦୟା ଥାଏ, ତାକୁ କେବଳ କିଛି କଷ୍ଟ ଦେଇ ବା କିଛିଟା ନିରାଶା ଦେଇ ଛାଡ଼ିଦେବ । କଷ୍ଟ ପାଇବା ବା କୌଣସି ଜିନିଷ ନ ପାଇବାଟା ଏପରି କଣ ବଡ଼ କଥା ? ପିଲାଦିନରୁ ତ ଜାଣିଛୁ ଯେ ଜୀବନରେ ଅନେକ କିଛି ପାଇବୁ ନାହିଁ । ଅନେକ ଆଶା ସଫଳ ହେବ ନାହିଁ । କିନ୍ତୁ ଭାଗ୍ୟର ପ୍ରକୃତ ଖେଳ, ପ୍ରକୃତ ଉପହାସ ହେଉଛି ଯେ ତୁମର ଜୀବନର ସବୁଠାରୁ ବଡ଼ ଆଶା ପୂର୍ଣ୍ଣ ହେବ, କିନ୍ତୁ ସେତେବେଳେ ଯେତେବେଳକୁ ସେହି ଆଶାହିଁ ଅର୍ଥହୀନ ହୋଇ ସାରିଥିବ । ଅମୃତଲାଲ ପ୍ରତି ଭାଗ୍ୟ ଯାହା କଲା ତାହା ପରିହାସ ତ ନିଶ୍ଚୟ । କିନ୍ତୁ ତାହାଠାରୁ ବି ବଳି ନିଷ୍ଠୁର ପରିହାସ ହେଇ ପାରିଥାଆନ୍ତା ।

ତୁମେମାନେ ଦେଶ ବିଭାଜନଟା ନିଜ ଆଖିରେ ଦେଖିନାହଁ । କିନ୍ତୁ, ଆମେ, ଯେଉଁମାନେ ପଶ୍ଚିମ ପାକିସ୍ଥାନରୁ ଏଠିକି ଆସିଲୁ, ଆମେ ତାହାର ଅସଲ ସ୍ୱରୂପ ଦେଖିଛୁ । ହୁଏତ ଜଲନ୍ଧର, ଲୁଧିଆନା, ଅମ୍ବାଲାର ମୁସଲମାନମାନେ ମଧ୍ୟ ତାହା ଦେଖିବାକୁ ବାଧ୍ୟ ହୋଇଛନ୍ତି । ତୁମେ ଦିଲ୍ଲୀ, ୟୁପିର ବାସିନ୍ଦା ଅବଶ୍ୟ ଦଙ୍ଗା ଦେଖିଥାଇ ପାର । କିନ୍ତୁ ତୁମେ ତୁମ ଦେଶରେ ରହିଲ । ନିରାଶ୍ରୟ ହୋଇ ବଞ୍ଚିବାକୁ ଆଉ ଗୋଟାଏ ଦେଶକୁ ତ ପଳାଇବାକୁ ହୋଇନାହିଁ । ଆମର ଅନେକ କାହାଣୀ ତୁମକୁ ଅବିଶ୍ୱାସ୍ୟ ଲାଗିବ । ହୁଏତ ତାହାକୁ ତୁମେ ଫିଲ୍ମି ଡ୍ରାମା ମଧ୍ୟ କହିବ । କିନ୍ତୁ ମନେ ରଖ । Sometimes facts are stranger than fiction । ମୁଁ ଯୁଦ୍ଧ ସମୟରେ ସିଗ୍ନାଲ୍ କୋର୍‌ରେ ପଶିଯାଇଥିଲି । ୧୯୪୬ ବେଳକୁ ମୋର କମ୍ପାନୀ ଇଜିପ୍ଟରେ ଗୋଟିଏ ଇନ୍‌ଫାଣ୍ଟ୍ରି ବ୍ରିଗେଡ ସାଥିରେ ଥିଲା । ସେଠାରୁ ଆମେ ଜାହାଜରେ କରାଚୀ ଆସିଲୁ । ସେତେବେଳେ ଅନେକ ବ୍ରିଗେଡ଼ରେ ଦୁଇଟା ବା ତିନିଟା ଭାରତୀୟ ବଟାଲିୟନ୍ ଓ ଗୋଟିଏ ବ୍ରିଟିଶ୍ ବଟାଲିୟନ୍ ଥିଲା । ଗୋରା ବଟାଲିୟନ ବିଲାତ୍ ଫେରିବା ଲାଗି କରାଚୀରେ ରହିଗଲା । ଅବଶ୍ୟ ତାର ଯଦି ଇଂଲଣ୍ଡ ଯିବାର ଥିଲା, ତାହାକୁ କରାଚୀ ଆଣିବା କଣ ଦରକାର ଥିଲା ? ତେବେ ସରକାରର କଥା କିଏ ବୁଝିଲାଣି ନା ବୁଝିବ ? ବାକି ଦୁଇ ବାଟାଲିୟନ । ବଲୁଚ୍ ହୋଇଥିବାରୁ ମୁଲତାନକୁ ଗଲା । ତା ସାଥିରେ ସିଗ୍ନାଲ କମ୍ପାନୀ ମଧ୍ୟ । ଏହା ଭିତରେ ଅର୍ଡର ଆସିଲା ଯେ ଆମ କମ୍ପାନୀ ଡ଼ିମୋବିଲାଇଜ୍ ହେବ, ଅର୍ଥାତ୍ ଭାଙ୍ଗି ଦିଆଯିବ । ଆମର ରେକର୍ଡ ଅଫିସ ରାୱଲପିଣ୍ଡୀ ପାଖରେ ଚକଲାଲାରେ ଥିଲା । ସେଠି ପହଞ୍ଚିଲାବେଳକୁ ରଏଟ୍ ଲାଗି ଗଲାଣି ।

ଆମ ଘର ରାୱଲପିଣ୍ଡି ସହରରେ । ମୁଁ ତ ସେ ପର୍ଯ୍ୟନ୍ତ ସୈନିକ, ଏଣୁ ଅନେକଟା ନିରାପଦ । ଘରକୁ ଆସି ଦେଖିଲି ଯେ ଆମ ପରିବାର ପଳାଇ ଗଲେଣି । ମୁସଲମାନ ପ୍ରତିବେଷୀ ମାନେ କହିଲେ ଯେ ସେମାନେ ଲାହୋର ଚାଲିଯାଇଛନ୍ତି । ଅଧିକାଂଶ ଲୋକଙ୍କ

ବିଶ୍ୱାସ ଥିଲା ଯେ ଲାହୋର ଭାରତକୁ ଯିବ କାରଣ ଲାହୋର ସହର ଓ ତାହାର ପାଖ ଅଞ୍ଚଳରେ ହିନ୍ଦୁ ଶିଖଙ୍କ ସଂଖ୍ୟା ମୁସଲମାନଙ୍କଠାରୁ କିଛି ଅଧିକ। ସେତେବେଳକୁ ଚାରିଆଡେ ଗୋଳମାଳ। ଏଣୁ ଆମର ଡିମୋବିଲାଇଜେଶନ୍ ଅଟକି ଗଲା। କାମ ସରୁ ସରୁ ୧୯୪୭ ମେ ଜୁନ୍, ଅବସ୍ଥା ବୁଝୁଥିବ। ମୋର ଛୁଟି ତ ହେଲା। ଏଣୁ ମୁଁ ପରିବାରକୁ ଖୋଜିବାକୁ ଲାହୋର ବାହାରିଲି। ଅବଶ୍ୟ ମୁଁ ସେତେବେଳେ ମଧ ୟୁନିଫର୍ମ ପିନ୍ଧୁଥିଲି କାରଣ ତାହା ନିରାପଦ। ସେହି ଗୋଳମାଳ ଭିତରେ ଆମ ଭିତରୁ ଅନେକ କିଛି ଅସ୍ତ୍ର ଆତ୍ମରକ୍ଷା ଲାଗି ଯୋଗାଡ଼ କରିନେଲେ। ଡ଼ିପୋବାଲା ତାଙ୍କ ସୈନିକ ଭାଇଙ୍କୁ କିଛି ଅସ୍ତ୍ର ଦେଇ ଦେଉଥିଲେ। ଅବଶ୍ୟ କିଛି ଘୁସ ହେବାକୁ ପଡୁଥିଲା। ମୁଁ ମଧ ଆତ୍ମରକ୍ଷା ପାଇଁ ଗୋଟିଏ ସ୍ଟେନଗନ ଏବଂ ତିନିଟି ଗୁଳିଭରା ସ୍ଟେନଗନ୍ ମ୍ୟାଗାଜିନ ଆଣି ପାରିଥିଲି। ତାହା ଯେ ମୋ ପାଇଁ କେତେ ବରଦାନ ହୋଇଥିଲା ତାହା ମୁଁ ଜାଣେ। ଆଜି ହୁଏତ ସେଥିଲାଗି ବଞ୍ଚିଛି।

ମୁଁ ଲାହୋର ପହଞ୍ଚିଲା ବେଳକୁ ରାଡ୍‌କ୍ଲିଫ୍ ଅୱାର୍ଡ ବାହାରି ଗଲାଣି, ଲାହୋର ପାକିସ୍ତାନରେ ପଡିଛି ଓ ଗୁରୁଦାସପୁର ଭାରତରେ। ସମସ୍ତେ ଓଲଟାଟା ଆଶା କରୁଥିଲେ। ତାହାପରେ ଲାହୋରରେ ଯାହା ଆରମ୍ଭ ହେଲା ତା ତୁମେ ବୁଝି ପାରୁଥିବ। ଏପରି କେତେଦିନ ହେଲାପରେ ସରକାର ହିନ୍ଦୁଶିଖ ମାନଙ୍କ ଲାଗି ଶରଣାର୍ଥୀ ଶିବିର କଲା। ପ୍ରଥମତଃ ଏହି ଡିଏଭି କଲେଜ ଓ ଖାଲସା କଲେଜରେ ହୋଇଥିଲା। କେତେକ ହାଇସ୍କୁଲ ମଧ ଏଥିପାଇଁ ନିଆ ଯାଇଥିଲା ଏବଂ ଏଠି ମିଲିଟାରୀ ପହରା ଥିଲା। ତୁମେ ବୁଝିପାରୁଥିବ ଯେ ସେଠି ମୁଁ ମୋର ପରିବାରଙ୍କୁ ପାଇଲି ନାହିଁ। ଅବଶ୍ୟ ଆଶା ଯାଇନଥିଲା କାରଣ ଅନେକ ସୀମା ପାର କରିବାରେ ସଫଳ ହୋଇଥିଲେ ଏବଂ ଏ ପର୍ଯ୍ୟନ୍ତ ସମସ୍ତ ସହରରେ କେଉଁଠି କେଉଁଠି ହିନ୍ଦୁ ଶିଖ ରହି ଯାଇଥିଲେ କାରଣ ମିଲିଟାରୀ ସେମାନଙ୍କୁ ସେଠାରୁ ଖାଲି କରାଇ ପାରି ନଥିଲେ।

ସେ ସମୟ ବିଚିତ୍ର। ଦିନ ରାତି ମଧରେ ଫରକ ନାହିଁ। ଦିନଟା ପୋଡୁଥିବା ଘରଦ୍ୱାରର ଧୂଆଁ ଉଠି କୁହୁଡ଼ିଆ। ରାତିଟା ନିଆଁର ଦାଉ ଦାଉରେ ଆଲୁଅ। ୟୁନିଫର୍ମ ଥିଲେ ଖାଇବାର ଚିନ୍ତା ନଥିଲା। ଯେଉଁ ଲଂଗାର (ସୈନିକ ରୋଷେଇଘର) ପାଖରେ ପହଞ୍ଚିଲେ ଖାଇବାକୁ ମିଳିଯିବ। ମୁଁ ଏକା ନୁହେଁ। ଆଉ ଅନେକ ସୈନିକ ମଧ ଏହିପରି ନିଜ ଲୋକଙ୍କୁ ଖୋଜୁଥାଆନ୍ତି। କହିବା ବାହୁଲ୍ୟ ଯେ ସେହି ଖୋଜା ପ୍ରାୟ ଅସଫଳ। ମୁଁ ମଧ ମୋର କାହାକୁ ପାଇଲି ନାହିଁ। କିନ୍ତୁ ଭାଗ୍ୟର ପରିହାସ, ମୁଁ ଶେଷକୁ ପାଇଲି ଶନ୍ନୋକୁ।

ତାର ଡାକନାମ ଶନ୍ନୋ। ତେବେ ଭଲ ନା ସଂଯୁକ୍ତା। ପିଣ୍ଡୀରେ ଆମ ଘର ପାଖର। ପିଲାଦିନୁ ଦେଖିଛି। ଜାଣିଛି। ସାଇର ଆଉ ଦଶଟା ପିଲାଙ୍କ ପରି। ଦୁଇ ପରିବାର ମଧରେ ଯଥେଷ୍ଟ ଯିବା ଆସିବା ଥିଲା। ମୋଠାରୁ ଦୁଇ ତିନିବର୍ଷ ସାନ ହେବ। ବେଶ୍ ସୁନ୍ଦର ଝିଅଟିଏ।

କିନ୍ତୁ ଅସାଧାରଣ ବୋଲି କଦାପି ମନେ କରି ନାହିଁ । ତୁମେ ତ ଜାଣ ପଞ୍ଜାବର ଖତ୍ରୀ ଜାତିରେ ସୌନ୍ଦର୍ଯ୍ୟର କୌଣସି ଅଭାବ ନାହିଁ । ଏଣୁ ଲକ୍ଷ୍ୟ କରିବାର କିଛି ନାହିଁ । ସେଇ ବର୍ଷ ମୁଁ ହାଇସ୍କୁଲ ଦେବି । ଦିନେ ଶନ୍ନୋ ଘରକୁ ଗୋଟିଏ କଣ କାମରେ ଯାଇଥିଲି । ତାଙ୍କ ଘରତ ମୋ ଲାଗି ଅବାରିତ ଥିଲା । ମୁହଁସଂଜ ବେଳ । କାହିଁକି କେଜାଣି ଛାତ ଉପରକୁ ଗଲି । ଉପରେ ପାରାପେଟକୁ ଆଉଜି ଶନ୍ନୋ ଠିଆ ହୋଇଛି । ବୋଧହୁଏ ଉତ୍ତର ଦିଗରେ ମରୀର ପାହାଡ଼ର ସନ୍ଧ୍ୟାଲୋକରେ ରଙ୍ଗ ବଦଳିବା ଦେଖୁଛି । ତାହା ସତରେ ଅତି ସୁନ୍ଦର । ବୋଧହୁଏ ମୋର ପାଦଶବ୍ଦ ଶୁଣି ବୁଲି ପଡ଼ିଲା । ମୋତେ ଚାହିଁ ମୁହଁ ଲାଲ ହେବାକୁ ଲାଗିଲା । ହଠାତ୍ ଫିକ୍ କରି ଟିକିଏ ହସି ଦେଇ ମୁହଁ ଦୁପଟ୍ଟାରେ ଘୋଡ଼ାଇ ଦେଲା । ମୁଁ ଛାତରେ ତାହା ଆଡକୁ ଯିବାକୁ ଲାଗିଲି । ସେ ଏହି ସୁବିଧା ଅପେକ୍ଷାରେ ଥିଲା । ମୁଁ ସିଡ଼ି ଦୁଆରରୁ ଘୁଞ୍ଚିଯିବା ମାତ୍ରେ ଦେ ଦୌଡ଼ ଓ ଗାଏବ୍ ।

ଅବଶ୍ୟ ଏହାପରେ ଅନେକ ଦେଖା ହୋଇଛି । ତାହାର ଓ ମୋର ମଧ୍ୟରେ କିଛିଟା ଘନିଷ୍ଠତା, କିଛିଟା ସ୍ନେହ ଗଢ଼ି ଉଠିଥିଲା । କିନ୍ତୁ ତାହା ପ୍ରେମ ନାମକ ଜିନିଷ ହୋଇପାରେ ଏ ଧାରଣା ମୋଟେ ମୋ ମୁଣ୍ଡରେ ଢୁକି ନଥିଲା । ତେବେ ସେହି ସନ୍ଧ୍ୟା ପରଠାରୁ ଜାଣିଲି ଯେ ନାରୀର ସୌନ୍ଦର୍ଯ୍ୟ କଣ । ମାଟ୍ରିକୁଲେସନ ପାସ କରି ମୁଁ ସେନାରେ ଭରତି ହୋଇଗଲି । ଆମ ଘରେ ଅନେକ ସେନାରେ ଥିଲେ । ପ୍ରାୟ ସମସ୍ତେ ଅବଶ୍ୟ କ୍ଲର୍କ । କିନ୍ତୁ ମୁଁ ମେକ୍ୟାନିକାଲ୍ ଦିଗକୁ ଯିବାକୁ ଚାହିଁଲି । ଥରେ ୧୯୪୪ରେ ଘରକୁ ଛୁଟିରେ ଆସିଥିଲା ବେଳେ ଜାଣିଲି ଯେ ଶନ୍ନୋର ବିବାହ ହୋଇଯାଇଛି ଓ ତାହାର ଶାଶୁ ଘର ଲାହୋର । ସେମାନଙ୍କର ସେଠି ଦୋକାନ ଅଛି । ଖବରଟା ବଡ ସାଧାରଣ । କିନ୍ତୁ ତାହା ଶୁଣିଲା ପରେ ନିଜର ଭିତରଟା କିପରି ଫାଙ୍କା ଫାଙ୍କା ଲାଗିଲା । ମୋର ଅଜାଣତରେ ସେ ଟୋକି ମୋ ମନରେ ଯାଗା ମାଡ଼ି ବସିଥିଲା । ସେ ଯେ ସବୁ ଦିନ ଲାଗି ଅନ୍ୟର ହୋଇଗଲାଣି ଶୁଣିଲା ପରେ ମୋତେ ଗାଡ଼ି ଚକରୁ ହାଓ୍ୱା ବାହାରି ପଙ୍କଚର୍ ହୋଇଗଲା ପରି କିପରି ଅସହାୟ ଲାଗିଲା । ଅବଶ୍ୟ ଅତି ଶୀଘ୍ର ଏହି ଅବସ୍ଥା ଚାଲିଗଲା ଏବଂ ମୁଁ ବାସ୍ତବତା ସହିତ ସାଲିସ କରିନେଲି । ହଁ, ଜାଣିଲି ଯେ କିଛି ହରାଇଲି । କିନ୍ତୁ ଜୀବନରେ ହରାଇବାଟା କଣ ନୂଆ କଥା ?

ଲାହୋର । ପଚିଶ ଅଗଷ୍ଟ ଉଣିଶଶହ ଶତଚାଳିଶ, ସମୟ ପ୍ରାୟ ସକାଳ ଦଶଟା । ଶୁଣିଥିଲି ମଣ୍ଡି ସୁଜାନ ସିଂହ ଅଞ୍ଚଳରେ ଏପର୍ଯ୍ୟନ୍ତ କିଛି ହିନ୍ଦୁ ରହିଯାଇଛନ୍ତି । ଭାବିଲି ସେପଟଟା ଚକ୍କର କାଟିଦିଏ । କିନ୍ତୁ ମୁଁ ପହଞ୍ଚିଲାବେଳକୁ ସେ ଅଞ୍ଚଳ ଦଙ୍ଗାକାରୀଙ୍କ ଦ୍ୱାରା ଆକ୍ରାନ୍ତ । ହୁଦ୍ ହୁଦ୍ ନିଆଁ ଜଳୁଛି । ଭାଗ୍ୟକୁ ଏହି ସମୟକୁ ଚାରିଟା ମିଲିଟାରୀ ଗାଡ଼ି ଆସିଗଲା । ସେ ସମୟରେ ନିୟମ ଦଙ୍ଗା ଦେଖିଲା ମାତ୍ରେ ଗୁଳି କରିବା । ଫଳରେ ଫାୟାରିଂ ଓ ଦଙ୍ଗାକାରୀଙ୍କ ପଳାୟନ । ମୁଁ ଛପି ରହିଗଲି । ଦଙ୍ଗାକାରୀଙ୍କ ପଛେ ପଛେ ମିଲିଟାରୀ

ଗାଡ଼ି ଗୋଡ଼ାଇଲା । ତାହାପରେ ନିଶ୍ଚୟ ଅନ୍ୟତ୍ର ଚାଲିଗଲା, କାରଣ ଆବଶ୍ୟକତା ବହୁତ । ମୁଁ ତାହାପରେ ବାହାରିଲି । ନିଆଁ ଜଳୁଛି । ସେ ସମୟରେ ଫାୟାର ବ୍ରିଗେଡ୍‌ର ପ୍ରଶ୍ନ ନ ଥିଲା କୁଆଡେ ବା ଯିବ । ଗୋଟା ଲାହୋର ତ ଜଳୁଛି । ଚାରିଆଡ଼େ ଖୋଜୁଛି । କାଳେ କାହାକୁ ଦେଖିବି । ଏହିପରି ଉଦ୍ଦେଶ୍ୟହୀନ ଭାବରେ ବୁଲୁଛି । ଦେଖିଲି ଗୋଟାଏ ଯାଗାରେ ଘର ଜଳୁଛି । ଦୋତାଲା ଛାତ ଉପରେ କିଏ ନାରୀମୂର୍ତ୍ତି ଠିଆ ହୋଇଛି ନିର୍ବିକାର । ଚୁପ୍‌ଚାପ୍ । ଭଲ କରି ଚାହିଁଲି, ଏ କଣ ଶନ୍ନୋ ? ହଁ ତ ।

ତୁମକୁ ମୋ ମନର ଅବସ୍ଥା କହି ପାରିବି ନାହିଁ, କହି ପାରିଲେ ହୁଏତ ତୁମେମାନେ ବିଶ୍ୱାସ କରି ପାରିବ ନାହିଁ । ମୋତେ ସେହି ପିଣ୍ଡାରେ ସନ୍ଧ୍ୟାବେଳେ ଛାତ ଉପରେ ଦେଖିଥିବା ଝିଅଟି ହିଁ ଦେଖାଗଲା । ମୁଁ ଚିତ୍କାର କଲି, 'ଶନ୍ନୋ, ଶନ୍ନୋଏ,' । ସେହି ନାରୀଟି ତଳକୁ ଚାହିଁଲା । ମୁଁ ଚିତ୍କାର କରି ଚାଲିଥାଏ, 'ଶନ୍ନୋ, ଶନ୍ନୋ' । ହଠାତ୍ ସେ ପାଟି କଲା 'କିଏ, କିଏ କିଶନ୍ କି ?'

ମୁଁ କହିଲି, 'ଶନ୍ନୋ, ମୁଁ କିଶନ୍ । ଏଘର ଜଳୁଛି । ବାହାରି ପାରିବୁ ନାହିଁ । ତେବେ ଉଚ୍ଚ ବେଶି ନୁହେଁ । ମୋ ଉପରକୁ ଡେଇଁ ପଡ଼ । ମୁଁ ତୋତେ ଧରି ନେବି ।'

ଶନ୍ନୋ କହିଲା, 'ତା ହେବନି, କିଶନ । ଏହା ମୋର ଶ୍ୱଶୁର ଘର । ମୋ ସ୍ୱାମୀଙ୍କୁ ହତ୍ୟା କରା ଯାଇଛି । ତାଙ୍କ ଲାସ ତଳେ ପଡିଛି । ଏହି ଘରକୁ ମୁଁ ବାହା ହୋଇ ଆସିଛି । ଏଠୁ କେବଳ ମୋର ଆର୍ଥୀ (ହିନ୍ଦୀ ପଂଜାବୀରେ ଶବର କୋକେଇ) ବାହାରିବା କଥା । ଭଗବାନଙ୍କ ଆଦେଶ, ମୋତେ ଏହି ନିଆଁରେ ଜଳି ଯିବାକୁ ହେବ । ମୋର ଭାଗ୍ୟ ଏତିକି ଯେ ଦଙ୍ଗାକାରୀ ମାନେ ମୋତେ ଦେଖି ପାରି ନାହାନ୍ତି । ଏଣୁ ଇସ୍‌ମତ୍ (ସତୀତ୍ୱ) ବଞ୍ଚି ଯାଇଛି । ଏଇଠି ମୋର ସ୍ୱାମୀଙ୍କ ଶବ ସହିତ ମୁଁ ସତୀ ହେବି । ମୋର ଏହି ଶେଷ ସମ୍ପଦକୁ ଛାଡିବାକୁ ମୋତେ ପ୍ରଲୋଭନ ଦିଅ ନାହିଁ । ତୁମେ ପଳାଅ । ଏ ଯାଗାରେ ବହୁତ ବିପଦ ।'

ମୁଁ କହିଲି, 'ଶନ୍ନୋ, ମୁଁ ହଥିଆରବନ୍ଦ ସିପାହୀ, ମୁଁ ମରିବି ତ ଦଶଟାଙ୍କୁ ମାରିଦେବି ମଧ୍ୟ । ତୁ ଆଉ ଡରନା । ଡେ଼ରି କରନା । ମୁଁ ଅଛି । ନୂଆ ଜୀବନ ଅଛି । ତୁ ଆଉ ସେ ସବୁ ପୁରୁଣା କାହାଣୀ ଛାଡ଼ । ଡେଇଁପଡ଼, ଶନ୍ନୋ, ମୋ ଶନ୍ନୋ, ଡେଇଁପଡ଼ ।'

ଶନ୍ନୋ କହିଲା, 'କିଶନ, ଡେ଼ରି ବହୁତ ହୋଇଗଲା । ମୋତେ ନେବାର ଥିଲା ତ ପିଣ୍ଡାରୁ ନେଇ ଗଲ ନାହିଁ କାହିଁକି ? ଆଉ ଏ ଜନ୍ମରେ ନୁହେଁ । ମୁଁ ଧର୍ମ ଛାଡ଼ିବିନି କି ଧର୍ମ ମୋତେ ଛାଡ଼ିବନି ।'

ଶନ୍ନୋ ଠିକ୍ କହୁଥିଲା । ଛାତ ଉପରକୁ ନିଆଁ ଉଠି ଆସିଲାଣି । ମୁଁ ଚିତ୍କାର କଲି, 'ଶନ୍ନୋ, ଶନ୍ନୋ, ଏଇଲେ ବି ଡେଇଁପଡ଼ ।' କିନ୍ତୁ ଶନ୍ନୋ ନିର୍ବିକାର । ତାର ଦେହ ଚାରିପଟେ ନିଆଁ । ହଠାତ୍ ଛାତ ଦବିଗଲା । ନିଆଁ ଲାଗି କାଠର କଡ଼ି ବରଗା ଭାଙ୍ଗିଗଲା ନିଶ୍ଚୟ । ଆଉ

ଶନ୍ନୋ ନଥିଲା ।

ଭାଗ୍ୟ, (କେତେକ ଅତି ଅଶ୍ଳୀଳ ଗାଳି କହିସାରି) ସେ ହରାମଜାଦା କଣ ମୋ ସାଥିରେ ନ କଲା । ଯେତେବେଳେ ଜାଣିଲି ଯେ ମୁଁ ଶନ୍ନୋକୁ ପ୍ରେମ କରେ ସେତେବେଳକୁ ସେ ମୋ ହାତର ବାହାରେ । ଯଦି ଆଗରୁ କହି ପାରିଥାଆନ୍ତି, ତାହାହେଲେ ଉଭୟ ପରିବାର ନିଶ୍ଚୟ ମୋର ଓ ଶନ୍ନୋର ବାହାଘର ଲାଗି ରାଜି ହୋଇ ଥାଆନ୍ତେ । ପୁଣି ତାକୁ ଯେତେବେଳେ ପାଇଲି, ଶନ୍ନୋର ଧର୍ମ (ପୁଣି ଗାଳି) ତା ଗୋଡ଼କୁ ବାନ୍ଧି ଦେଲା । ଶନ୍ନୋ ତ ପୋଡି ଶେଷ ହେଲା । କିନ୍ତୁ ଯେଉଁ ନିଆଁ ମୋ ଭିତରେ ଲଗାଇ ଦେଇ ଗଲା ତାର କଣ ହେବ ।

ଲକଡ଼ି ଜଲ୍ ଭୟୀ କୋୟଲା, କୌୟଲା ଜଲ ଭୟୀ ରାଖ୍ ।
ମୈ ପାପିନ୍ ଐସୀ ଜଲୀ, କି ନ କୋୟଲା ଭୟୀ ନା ରାଖ୍ ।

(କାଠ ପୋଡ଼ି ଅଙ୍ଗାର ହେଲା ଓ ଅଙ୍ଗାର ପୋଡି ପାଉଁଶ ହେଲା । କିନ୍ତୁ ମୁଁ ଏପରି ପୋଡିଲି ଯେ ନା ପାଉଁଶ ହେଲି ନା ଅଙ୍ଗାର)

ସମସ୍ତେ ଚୁପ୍ । ଶନ୍ନୋ ଯେପରି ଚାଚାଙ୍କ ପ୍ରିୟା ହିଁ ନୁହେଁ, ସେ ସମସ୍ତଙ୍କର ନ ପାଇପାରିବାର ବେଦନାର ପ୍ରତୀକ । ଚାଚା ହିଁ ନୀରବତା ଭାଙ୍ଗି କହିଲେ, 'ଉଠ, ଡେରି ହେଲାଣି । ଏହା ତ ସକାଳ ସନ୍ଧ୍ୟା ସବୁବେଳର ସାଥି । ଏଥିଲାଗି କଣ ସଂସାରର କାମ ବନ୍ଦ ହେବ ।'

ସେଦିନ ଲାଗି କଚିରି ଅର୍ଥାତ୍ ଆଡ୍ଡା ବରଖାସ୍ତ ହେଲା ।



# ବଧୂ ସୁନ୍ଦରୀ

ଷ୍ଟାଫ୍ କମନ୍‌ରୁମ୍‌ରେ ଆସର ଗରମ । ଅଧାପିକା ସେଇ ଚାରିଜଣ । ସେମାନେ ନିଜ ଲାଗି ଏକ ଛୋଟ କୋଠରୀ ବାଗେଇ ନେଇଛନ୍ତି । ନିହାତି ଦରକାର ନହେଲେ ଷ୍ଟାଫ୍ କମନ୍‌ରୁମ୍‌କୁ ଆସନ୍ତି ନାହିଁ । କୌଣସି ନାରୀର ଉପସ୍ଥିତିଜନିତ ଶୃଙ୍ଖଳରୁ ମୁକ୍ତ ଥିବାରୁ ଯୁବକ ଏବଂ ନିଜକୁ ଯୁବକ ମନେ କରୁଥିବା ଅଧାପକମାନେ କଥାବର୍ତ୍ତାରେ ବର୍ତ୍ତମାନ ଲଗାମଛଡା । ବିଷୟ ମୁଖ୍ୟ ଏବଂ ହୃଦୟ ରୋଚକ । କେଉଁ ପ୍ରଦେଶର ନାରୀମାନେ ସବୁଠାରୁ ସୁନ୍ଦରୀ । ବହୁ ଭିନ୍ନ ମତ ଏବଂ ସମସ୍ତେ ନିଜର ନିଜର ଉର୍ବଶୀମାନଙ୍କ ଲାଗି ପ୍ରାଣମୂର୍ଚ୍ଛା ସଂଗ୍ରାମ ଲାଗି ପ୍ରସ୍ତୁତ ।

ଏହି ସମୟରେ କର୍ଣ୍ଣେଲ ସାହେବ ଆସି ପହଞ୍ଚିଲେ । ତାଙ୍କର ପୁରା ନାମ ହେଲା କର୍ଣ୍ଣେଲ ଗିରିଜା ବଲ୍ଲଭ ପଟ୍ଟନାୟକ, Ph.D.(I.I.T. Madras), M.I.E.F.R.G.S. ପୃଥିବୀରେ ମାନଚିତ୍ର ତିଆରି ବିଶେଷଜ୍ଞ ବା CARTOGRAPHER ହିସାବରେ ଯଥେଷ୍ଟ ନାମ ଅଛି । ସର୍ଭେ ଅଫ୍ ଇଣ୍ଡିଆର ଜଣେ ବଡ କର୍ତ୍ତା ଥିଲେ । ତାହା ସହିତ ଥିଲା ପର୍ବତାରୋହଣ ସଉକ । ସାସେର୍ କାଙ୍ଗ୍ରୀ ନାମକ ଶିଖର ଅଭିଯାନରେ ତାଙ୍କର ଫ୍ରଷ୍ଟବାଇଟ୍ ଯୋଗୁଁ ବାଁ ଗୋଡ଼ର ଦୁଇଟା ଆଙ୍ଗୁଠି କଟିଗଲା ଓ ଗୋଡ କିଛିଟା ଜଖମ ହୋଇଗଲା । ଆଉ ସେନାରେ ରହି ନଅଟା ପାଞ୍ଚଟା ଅଫିସ କରି ଦରମା ନେବାକୁ ଇଚ୍ଛା ହେଲାନାହିଁ । ଯଦି ଯୁଦ୍ଧ ଲାଗି ଉପଯୁକ୍ତ ନୁହଁ ତ ସେନାରେ ରହିବ କାହିଁକି ? ଏଣୁ ଆଗତୁରା ଅବସର ନେଇନେଲେ । ତାଙ୍କର ଅଭିଜ୍ଞତା ଇତ୍ୟାଦି ଲାଗି ନାନାଆଡୁ ଡାକ ଆସିଥିଲା । କିନ୍ତୁ ସେ ନିଜ ଘର ପାଖ କଲେଜରେ ରହି ସେଠାର ଭୂଗୋଳ ବିଭାଗକୁ ଗଢ଼ିବାରେ ଲାଗିଛନ୍ତି । ଦରମା ନିଅନ୍ତି ନାହିଁ, କାରଣ ସେ କଲେଜ ଯେଉଁ ଦରମା ଦେଇପାରିବ, ତାହା ଶୁଣିଲେ ହୁଏତ ସର୍ଭେର ଭାରବାହୀ ଖଚର୍‌ମାନେ ଅଟ୍ଟହାସ କରିବେ । ଦୀର୍ଘ ରୁକ୍ଷ ଦେହ । ମୁଣ୍ଡ ଚନ୍ଦା । ଟିକିଏ ଛୋଟା ତି । ସେହି ସାସେର କାଙ୍ଗ୍ରୀ ପର୍ବତର ସ୍ମୃତି । ବୟସ ପଚାଶରୁ ସାମାନ୍ୟ ବେଶି ।

କର୍ଣ୍ଣେଲ ସାହେବ ପହଞ୍ଚିଲା ପରେ ସେହି ଲଗାମହୀନ କଥାବାର୍ତ୍ତା ବନ୍ଦ ହୋଇଗଲା । ଯେତେହେଲେ ବୟସ ଲାଗି ଚକ୍ଷୁଲଜ୍ଜା ତ ଅଛି । କର୍ଣ୍ଣେଲ ସାହେବ ଫ୍ୟାନ୍ ତଳେ ବସି ମୁଣ୍ଡରୁ ଝାଳ ପୋଛିଲେ । ତାହାପରେ ପଚାରିଲେ, 'କ'ଣ ଉତ୍ପଳବାବୁ, ମୁଁ ଆସିବାରୁ ହଠାତ୍ ସେନସରଶିପ୍ ଲାଗିଗଲା ନା କ'ଣ ? ସମସ୍ତେ ଚୁପ୍ ଯେ ?' ଉତ୍ପଳବାବୁ କହିଲେ, 'ନାଇଁ ସାର୍, ଏମିତି ଟିକିଏ ଗୋଳାକିଆ କଥାବାର୍ତ୍ତା ହେଉଥିଲୁ, ଆପଣ ଆସିବାରୁ ବନ୍ଦ ହୋଇଗଲା ।'

ଆଉ ଜଣେ ଅଧ୍ୟାପକ ରମେଶଚନ୍ଦ୍ର ଆପତ୍ତି କଲେ, 'ଚୁପ୍‌କର ଉତ୍ପଳ । ବେଶି ଗୁରୁଜନ ଗୁରୁଜନ ଦେଖେଇ ହୁଅନି । ଆମର ଆଲୋଚନା ହେଉଥିଲା କେଉଁଠାର ସ୍ତ୍ରୀମାନେ ବେଶି ସୁନ୍ଦରୀ । ଫାଇନାଲ୍‌ଟା ଜଣା ପଡୁଛି ବଙ୍ଗଳା ଓ ହିମାଚଳ ମଧ୍ୟରେ ହେଲାପରି ଲାଗୁଛି । ପଞ୍ଜାବ ସେମିଫାଇନାଲ୍‌ରେ କଟିଗଲା, କାରଣ ପଞ୍ଜାବୀନୀ କୁଆଡେ, ବିବାହ ପରେ ମୋଟୀ ହୋଇ ଯାଆନ୍ତି । ଆପଣଙ୍କର ତ ସାର୍ ବହୁ ଅଭିଜ୍ଞତା । ବହୁ ଦେଶ ବିଦେଶର ସୁନ୍ଦରୀ ଅବଶ୍ୟ ଦେଖିଥିବେ । ଏଣୁ ଆପଣଙ୍କର ମତଟା ଅବଶ୍ୟ ମୂଲ୍ୟବାନ୍ ଏବଂ ଆପଣ ହିଁ ଏହି ପ୍ରତିଯୋଗିତାର ନିର୍ଣ୍ଣାୟକ ଜଜ୍ ହୋଇପାରିବେ ।'

କର୍ଣ୍ଣେଲ୍ ଜୋର୍‌ରେ ହସି କହିଲେ, 'ଏ ସମସ୍ୟାର ସମାଧାନ ନାହିଁ । ସେଥିଲାଗି ଭଗବାନଙ୍କୁ ଧନ୍ୟବାଦ । ନହେଲେ ତୁମେମାନେ ଗପ କରିବ କ'ଣ ? ଦ୍ୱିତୀୟ କଥା, ନାରୀର ଆଭରେଜ୍ ନାହିଁ । ପ୍ରତ୍ୟେକ individual, ସ୍ୱତନ୍ତ୍ର, ଅଦ୍ୱିତୀୟା । ଏଣୁ ତୁମ ପ୍ରଶ୍ନ ଭୁଲ୍ । ଏହାର ଉତ୍ତର ନାହିଁ ।'

ଉତ୍ପଳ ବାବୁ ଆପତ୍ତି କଲେ, 'କ'ଣ ସାର୍ ଏସବୁ ଦାର୍ଶନିକ ଧୂଆଁବାଣ ମାରୁଛନ୍ତି ? ଆଖିରେ ଦେଖୁଛୁ ସୁନ୍ଦରୀ ଅଛନ୍ତି । ଅସୁନ୍ଦରୀ ଅଛନ୍ତି । କାଳୀ ଅଛନ୍ତି ଗୋରୀ ଅଛନ୍ତି । ଚେପ୍‌ଟିନାକୀ ଖଣ୍ଡାନାକୀ ଅଛନ୍ତି । ଆପଣ ସୁନ୍ଦରୀ ଅସୁନ୍ଦରୀ ପ୍ରଭେଦଟାକୁ ହିଁ ଉଡାଇ ଦେବାର ଚେଷ୍ଟା କରୁଛନ୍ତି ।'

କର୍ଣ୍ଣେଲ୍ କହିଲେ, 'କ'ଣ ପ୍ରଫେସର ମହାନ୍ତି । ଆପଣ ତ ସାହିତ୍ୟ ପଢାନ୍ତି । ନନ୍ଦନ ଶାସ୍ତ୍ର ବା Aesthetics ର ପଣ୍ଡିତ । କ'ଣ ସବୁ ସଂସ୍କୃତରେ ନାହିଁ, ତନ୍ୱୀ ଶ୍ୟାମା ଶିଖରିଦଶନା, ପକ୍ୱବିମ୍ବୋ ଧରୋଷ୍ଠୀ । ଆପଣ ହିଁ ଏ ପିଲାଙ୍କ ସନ୍ଦେହ ମୋଚନ କରନ୍ତୁ ।' ଅଧ୍ୟାପକ ମହାନ୍ତି ପାଟିକଲେ, 'ଫାଉଲ ସାର୍ ଫାଉଲ୍ । ଆପଣ ଏପରି ଭାବ କରୁଛନ୍ତି ଯେ Aesthetics ଓ ସାହିତ୍ୟରେ ଆପଣଙ୍କର କିଛି ପ୍ରବେଶ ନାହିଁ । ସେଦିନ କପୁର ଘରେ ଆପଣ ଏକ୍‌ବାଲ୍ ଓ ରବୀନ୍ଦ୍ରନାଥଙ୍କର ଯେଉଁ ତୁଳନାତ୍ମକ ବିଶ୍ଳେଷଣ କରିଥିଲେ ତା ତ ମୋତେ କାବା କରି ଦେଇଥିଲା ।'

ଉତ୍ପଳବାବୁ ବାଧା ଦେଇ କହିଲେ, 'ସାର୍ ଏଥର ତ ଆପଣ ଖସି ପାରିବେ ନାହିଁ,

ତେବେ ବିଶ୍ଳେଷଣ ଇତ୍ୟାଦି ଆମର ହଜମ ହେବନି । ସିଧାସଳଖ ଆପଣଙ୍କର ମତ ଦିଅନ୍ତୁ ।'

କର୍ଣ୍ଣେଲ୍ କହିଲେ, 'ଧୈର୍ଯ୍ୟ ଧର । ମୁଁ କ'ଣ ନାହିଁ କରୁଛି ଯେ ସୁନ୍ଦରୀ ଅସୁନ୍ଦରୀ ନାହାନ୍ତି । କିନ୍ତୁ ସବୁ ଜାଗାରେ ଅଛନ୍ତି । ସିକିମ୍‌ର ଝିଅମାନେ ଚେପ୍‌ଟିନାକୀ ହେଲେ ମଧ ସୁନ୍ଦରୀ ଅଟନ୍ତି । ସୁନ୍ଦରୀ ଜଣେ ଜଣେ ନୋଳିଆଣି ତ ସାକ୍ଷାତ୍ ମୁଗୁନି ପଥରରେ କୌଣସି ମହାନ୍ କଳାକାର ଖୋଳିଥିବା ମୂର୍ତ୍ତି । ସେ କଥା ନୁହେଁ, ଅସଲ ସୌନ୍ଦର୍ଯ୍ୟ ବଡ଼ ବ୍ୟକ୍ତିଗତ । ଦୁଇଜଣ ବ୍ୟକ୍ତି ଏକା ସାଙ୍ଗରେ ଥାଆନ୍ତି । ଯେ ଦେଖେ ଓ ଯାହାକୁ ଦେଖାହୁଏ । ଏଣୁ ମୁଁ କହିଥିଲି ଏ ପ୍ରଶ୍ନର ଉତ୍ତର ନାହିଁ ।'

ପୁଲିସ କୁକୁର ଅପରାଧର ଗନ୍ଧ ପାଇଗଲା ପରି, ଆଡ୍ଡାଧାରୀଗଣ ଏକ ରସାଳ ଗଳ୍ପର ସନ୍ଧାନ ପାଇଗଲେ । କିନ୍ତୁ କର୍ଣ୍ଣେଲ୍ ସାହେବଙ୍କୁ ଟିକିଏ ବିରକ୍ତ ନହେଲେ ତାଙ୍କ ଠାରୁ ଗଳ୍ପ ବାହାରେ ନାହିଁ, ଏବଂ ତାଙ୍କୁ ବିରକ୍ତ କରିବାର ପ୍ରକୃଷ୍ଟ ଉପାୟ ହେଉଛି ବାଜେ ତର୍କ କରିବା । ଏହା ଆଡ୍ଡା ଉତ୍ତମ ରୂପେ ଅବଗତ ଅଛି, କିନ୍ତୁ କର୍ଣ୍ଣେଲ୍ ସାହେବଙ୍କ ସାଙ୍ଗେ ତର୍କ କରିବାର ଲାଇସେନ୍‌ସ୍ କେବଳ ପ୍ରଫେସର୍ ମହାନ୍ତି ଓ ଡାକ୍ତର ଘୋଷଙ୍କର । ଅନ୍ୟମାନେ ତର୍କ କଲେ ସେ ଉତ୍ତର ହିଁ ଦିଅନ୍ତି ନାହିଁ । ଯେପରି କିଛି ଶୁଣି ନାହାନ୍ତି । ଏଣୁ ପ୍ରଫେସର ମହାନ୍ତି କହିଲେ, 'କ'ଣ ସାର୍ ସେଇ ସବୁ ଗୋଦାମରଦି ମାଲ Beauty lies in the eyes of the beholder– ସୌନ୍ଦର୍ଯ୍ୟ ଦର୍ଶକର ଦୃଷ୍ଟିରେ ଆପଣ ଏଇଲେ ବି ଛାଡୁଛନ୍ତି । ଆମେ କଲେଜରେ ତ ଜଣେ ଦୁଇଜଣ ରହିଗଲେ । ବାହା ହୋଇ ପାରିଲେ ନାହିଁ । କାରଣ ନିଜ ପାଖରେ ରୂପ ନାହିଁ ଓ ବାପ ପାଖରେ ରୂପା ନାହିଁ । ଆଉ ଏପରି ଘଟଣା ଅନେକ ।'

କର୍ଣ୍ଣେଲ୍ କହିଲେ, 'ବିଲ୍‌କୁଲ୍ ସତ କଥା । କିନ୍ତୁ ତା ମୋର କଥାକୁ ଅପ୍ରମାଣ କରୁନାହିଁ । ମୁଁ କିନ୍ତୁ ଦେଖିଛି ଯେ ଗୋଟିଏ ଝିଅ ଯାହାକୁ ଗ୍ରେସ୍ ମାର୍କ ଦେଇ ମଧ ସୁନ୍ଦରୀ କହି ହେବ ନାହିଁ, ତା ପ୍ରେମରେ ଏକ ସୁପୁରୁଷ ଯୁବକ ପଡିଛି ଏବଂ ସେ ପ୍ରେମଟା ଚିକେନ୍ ପକ୍ସ ଭଳି ତିନି ସପ୍ତାହର ରୋଗ ନଥିଲା । ଓଲଟାଟା ମଧ ଦେଖିଛି । ସେ ଟୋକାଟା କ'ଣ ଦେଖିଲା ତା ସେ ଜାଣେ, କିନ୍ତୁ ପ୍ରାୟ ବାରବର୍ଷ ହୋଇଗଲା । ସେ ନିଶା ତ ଦୁହିଁଙ୍କୁ ଏ ପର୍ଯ୍ୟନ୍ତ ଘାରୁଛି ।'

ଏ ସମୟରେ ଜୋର୍ ବର୍ଷା ଆରମ୍ଭ ହୋଇଗଲା । ପ୍ରଫେସର ମହାନ୍ତି କହିଲେ, 'ସାର୍ ଦେଖନ୍ତୁ କେମିତି ଜୋର୍ ବର୍ଷା ଆରମ୍ଭ ହୋଇଗଲାଣି । ଏଇଟା ହିଁ ଉପଯୁକ୍ତ ସମୟ ପ୍ରେମ କଥା ଶୁଣିବାର । ଏହିକ୍ଷଣି ଯେଉଁ ପ୍ରେମିକ-ପ୍ରେମିକାଙ୍କ କଥା କହୁଥିଲେ ସେଇଟା ଟିକିଏ ଖୋଲାସା କରନ୍ତୁ । ଅନୂଢ଼ା ନାରୀ ପକ୍ଷରେ ରୂପ ବା ରୂପାର ବିନା ସହାୟତାରେ ବିବାହ ବାରିଧି ପାରିହେବା ପ୍ରାୟ ଅବିଶ୍ୱାସ୍ୟ । ଏହା ତ ପଙ୍ଗୁ ଲଂଘୟତେ ଗିରି ପରି । କେଉଁ

ଦେବ-ଦେବୀଙ୍କ କୃପା ଏହା ଜାଣିଲେ ବହୁ ବାଳିକା ଉପକୃତ ହୁଅନ୍ତେ ।'

କର୍ଣ୍ଣେଲ୍ କହିଲେ, 'କିଏ କହିଲା ସେ ସୁନ୍ଦର ନଥିଲା– ଥିଲା କିନ୍ତୁ ସାଧାରଣଙ୍କର ଆଖି ନଥିଲା ।'

ତା'ପରେ କହିଲେ, 'ଆଜିକୁ ପ୍ରାୟ ତେର ଚଉଦ ବର୍ଷ ତଳର କଥା । ସେତେବେଳେ ମୁଁ ଗୋଟାଏ ଛୋଟ ପୋଲ ତିଆରି ଇଉନିଟ୍‌ର କମାଣ୍ଡରେ ଆସାମର ଲଖିମିପୁରୁ ଜିଲ୍ଲାରେ ଥାଏ । ସେଠି ନଈ ସବୁ ପ୍ରତି ବର୍ଷା ପରେ ରାସ୍ତା ବଦଳାଇ ଦିଅନ୍ତି । ଏଣୁ ହରଦମ୍ ପୋଲ ତିଆରି ଚାଲିଥାଏ । ଏଇଠି ଏକ ପ୍ରକାର ଫୋଲ୍‌ଡିଂ ପୋଲର ବ୍ୟବହାର ବେଶି । ତା ଗୋଟେ ଜାଗାରୁ ଖୋଲି ଅନ୍ୟତ୍ର ଫିଟ୍ କରିହୁଏ ଏବଂ ଏ ଜିନିଷ ଓ ତାହାର ବ୍ୟବହାର ପଦ୍ଧତି ତ ଆର୍ମି ଇଂଜିନିୟର୍ସଙ୍କର ଏକଚାଟିଆ । ତେଣୁ ଆମର ଡାକରା ବହୁତ । ଚାରିଆଡେ ଚା' ବଗିଚା । ମୋ ଇଉନିଟ୍‌ରେ ମୋତେ ମିଶାଇ ତିନି ଜଣ ଅଫିସର୍ । ଏଥିରୁ ଜଣେ ନିଶ୍ଚୟ ବାହାରକୁ ଡିଉଟିରେ ଯାଇଥିବ । ଅନେକ ସମୟରେ ତ ଦୁଇଜଣ ଯାଏବ୍ । ଦିନଯାକ ନାନା କାମରେ କଟିଯାଏ । କିନ୍ତୁ ରାତି ହେଲେ ସମସ୍ୟା ହୁଏ । ବଡ ଏକୁଟିଆ ଓ ବିରକ୍ତିକର ଲାଗେ । ଜୁନିଅର କମିଶନଡ୍ ଅଫିସର୍ ଓ ଅନ୍ୟ ଷ୍ଟାଫ୍ ଲାଗି ଏତେ ସମସ୍ୟା ନାହିଁ । କାରଣ ସେମାନେ ଦେଢ଼ଶହ ଉପରେ । କେବଳ ଅଫିସରଙ୍କ ଅବସ୍ଥା ଖରାପ କାରଣ ପ୍ରଥମ କଥା ସେମାନେ ମାତ୍ର ତିନିଜଣ, ତା ପରେ ଜଣେ ବା ଅନେକ ସମୟରେ ଦୁଇଜଣ ଅନୁପସ୍ଥିତ କାରଣ ବାହାର ଡ୍ୟୁଟି, ଟୁର୍ ଓ ଛୁଟି । ସବୁଠୁ ଅସୁବିଧାରେ ମୁଁ କାରଣ ମୁଁ ଅଫିସର୍ କମାଣ୍ଡିଂ ହୋଇଥିବାରୁ ପ୍ରାୟ ଇଉନିଟ୍‌ରେ ରହିବାକୁ ପଡିବ । ନିକଟରେ ପ୍ରାୟ ଦୁଇ କିଲୋମିଟର ଦୂରରେ ଲାଓଜାନ୍ ପ୍ଲାଣ୍ଟରସ୍ କ୍ଲବ । ପାଖରେ ଅନେକ ଚା' ବଗିଚା ଥିବାରୁ ଏପରି କ୍ଲବର ଆବଶ୍ୟକତା । କାରଣ କୌଣସି ଏକ ଚା' ବଗିଚାରେ ଅଫିସରମାନଙ୍କ ଲାଗି କ୍ଲବ କରିବା ସମ୍ଭବ ନୁହେଁ । ମ୍ୟାନେଜରକୁ ମିଶାଇ ଅଫିସର୍ ଗୋଟିଏ ବଗିଚାରେ ତିନୋଟି ବା ଚାରିଟି । ଏଣୁ ସୁବିଧା ଜାଗା ଦେଖି ପ୍ଲାଣ୍ଟରସ୍ କ୍ଲବ ତିଆରି, ଯେପରିକି ଦଶ ପନ୍ଦର କିଲୋମିଟରେ ବ୍ୟାସାର୍ଦ୍ଧରୁ ସବୁ ବଗିଚାର ଅଫିସର୍‌ମାନେ ଆସି ପାରିବେ । ଆଗେ ତ ଚା' ପ୍ଲାଣ୍ଟରମାନେ ଇଂରେଜ ଥିଲେ । ଏଣୁ କ୍ଲବ ସବୁ ଗଢିଥିଲେ ଯେପରି ଏକ ଛୋଟ ଇଂଲଣ୍ଡ । ସେଠି ଟେନିସ୍ ଓ ଗଲ୍‌ଫ୍ ଖେଳିବାର ସୁବିଧା । ଅନେକ ସ୍ଥାନରେ ଇନ୍‌ଡୋର ସ୍କ୍ୱାଶ୍ କୋର୍ଟ । ଇଂଲଣ୍ଡର ପବ୍ ଭଳି ବାର୍ ଯେଉଁଠି ସାଙ୍ଗସାଥୀଙ୍କ ସାଥିରେ ଗଳ୍ପଗୁଜବ କରୁ କରୁ ଦୁଇ ଗ୍ଲାସ ବିଅର ପାନ କରାଯାଇପାରେ । ସପ୍ତାହରେ ଥରେ ବା ଦୁଇଥର ଇଂଲିଶ ସିନେମା ଦେଖାଯାଏ । ଏହା ଚା' ବଗିଚାର ସାମାଜିକ ଜୀବନର କେନ୍ଦ୍ରବିନ୍ଦୁ । ଅବଶ୍ୟ ଅଫିସର ଶ୍ରେଣୀର । କୁଲି ସମାଜ କଥା ଅଲଗା । ଆମ ପଣ୍ଡିତମାନେ ସେ ଆଡକୁ ମୋଟେ ନଜର ଦେଇ ନାହାନ୍ତି । ତାହା ନୃତତ୍ତ୍ୱ ଓ ଭାଷାତତ୍ତ୍ୱର ଏକ ଜୀବନ୍ତ ଲାବୋରେଟାରୀ । ସେନାର ଅଫିସରମାନଙ୍କୁ

ଟେମ୍ପରାରି ମେମ୍ବର କରିବାର ସୁବିଧା ଅଛି । ଏଣୁ ମୁଁ ଓ ଅନ୍ୟ ଅଫିସରମାନେ ଲାଓଜାନ୍ କ୍ଲବ୍‌ରେ ମେମ୍ବର ହୋଇଥିଲୁ । କ୍ଲବ୍‌ଟା ଅତି ପାଖରେ ପନ୍ଦର ମିନିଟ୍ ବି ଲାଗୁ ନଥିଲା । ସିନେମା ଦିନ ତ ନିଶ୍ଚୟ ଯାଉଥିଲୁ । ହିନ୍ଦୀ ସିନେମା ତ ଜୱାନ୍ ମାନଙ୍କ ଲାଗି ଆସୁଥିଲା । ଏଣୁ ଇଂଲିଶ ସିନେମା ପ୍ରତି ବେଶି ମୋହ ଥିଲା । ବେଳେବେଳେ ଟେନିସ୍ ଖେଳିବାକୁ ମଧ ଯାଉଥିଲି । ଅର୍ଥାତ୍ ଲାଓଜାନ୍ କ୍ଲବରେ ମୋର ବେଶ୍ ଯିବା ଆସିବା ଥିଲା ଏବଂ ଅନେକ ଟୀ ବଗିଚା ଅଫିସର୍‌ଙ୍କ ସାଙ୍ଗେ ପରିଚୟ ହେଲା । ତା ଭିତରୁ ଅନେକ ସେନାରେ ଆଗେ କାମ କରୁଥିଲେ । ରିଟାୟାର୍ ବା ରିଲିଜ୍ ପରେ ଟୀ' ବଗିଚାରେ କାମ କରୁଛନ୍ତି । ଏଣୁ ତାଙ୍କ ସାଙ୍ଗେ ଆମ ପକ୍ଷରେ ମିଶିବା ମଧ ସହଜ । ସେ ପର୍ଯ୍ୟନ୍ତ ଅନେକ ଇଂରେଜ ଭାରତୀୟ ସେନାରୁ ରିଟାୟାର୍ କରି ବ୍ରିଟିଶ ଟୀ' କମ୍ପାନୀରେ ଯୋଗ ଦେଇଥିଲେ । ଅର୍ଥାତ୍ ସେନାର ଅଫିସର୍ ଓ ଟୀ' ଶିଳ୍ପର ବଗିଚା ମ୍ୟାନେଜର ଶ୍ରେଣୀ ଭିତରେ ଯୋଗସୂତ୍ର ଅନେକ ଥିଲା ।

କ୍ଲବରେ ଯେ କେତେଜଣ ଟୋକା ଆସିଷ୍ଟାଣ୍ଟଙ୍କ ସାଙ୍ଗେ ଘନିଷ୍ଠତା ହେଲା ତା ମଧରୁ ଜଣେ ବେଶି ଘନିଷ୍ଠ ହେଲା ଦୀପକ ଆରୋରା । ଟୀ' ଶିଳ୍ପରେ ଆସିଷ୍ଟାଣ୍ଟ କହିଲେ କିରାନୀ ବୁଝାଏନି । ଆସିଷ୍ଟାଣ୍ଟ ମାନେ ଅଫିସର୍ । କିରାନୀଙ୍କୁ କୁହାଯାଏ 'ବାବୁ' । ଟୀ' ବଗିଚାର ଦୁଇଟା ଦିଗ । ଏକ ତ ଟୀ' ଗଛ । ଅନ୍ୟଟା ହେଲା କଞ୍ଚା ପତ୍ରକୁ ଟୀ'ରେ ପରିଣତ କରିବା କାରଖାନା । ଏଣୁ ମ୍ୟାନେଜରର ତଳେ ଦୁଇଜଣ । ଜଣଙ୍କ ନାଁ ହେଲା Garden Assistant, କୁଲି ଭାଷାରେ କାମଜାରି ସାହେବ । ଏହାଙ୍କ ଦାୟିତ୍ୱ ବଗିଚାର ଗଛ ଓ ଉପଯୁକ୍ତ ସମୟରେ ପତ୍ର ତୋଳା । ଅନ୍ୟ କର୍ତ୍ତା ହେଲେ Factory Assistant ଯାହାକୁ କୁଲିମାନେ କହନ୍ତି ମିସ୍ତ୍ରୀ ସାହେବ । ଏଥର ବୁଝିଲ ମୁଁ କାହିଁକି କହୁଥିଲି ଟୀ' ବଗିଚା ଭାଷାତତ୍ତ୍ୱର ଏକ ଲାବୋରେଟାରୀ । ମିସ୍ତ୍ରୀ ସାହେବଙ୍କ ପାଖେ ଫାକ୍ଟ୍ରୀ (କୁଲିଭାଷା କଳ ଘର), ସେଠି ପତ୍ରକୁ ନାନା ପ୍ରକାର ପଦ୍ଧତିରେ ଖାଇବା ଟୀ'ରେ ପରିଣତ କରାଯାଏ । ଦୀପକ ଟେଙ୍ଗରାଇ ବଗିଚାରେ ଫାକ୍ଟ୍ରୀ ଆସିଷ୍ଟାଣ୍ଟ । ତାର ମୋର ପଡିବାର ଅନ୍ୟ ଏକ କାରଣ ମଧ ଅଛି । ପତ୍ରତୋଳା ମଉସମ ଅର୍ଥାତ୍ ଏପ୍ରିଲ ଠାରୁ ଅକ୍ଟୋବର, ନଭେମ୍ବର ପର୍ଯ୍ୟନ୍ତ ଫାକ୍ଟ୍ରୀ ଆସିଷ୍ଟାଣ୍ଟ ମରିବାକୁ ମଧ ସମୟ ପାଏନି । ସେ ସମୟରେ ତାର କାମ ରାତି ଦୁ ଇଟାରୁ ଆରମ୍ଭ । ସେ ଛୁଟି ପାଏ ପ୍ରାୟ ଅପରାହ୍ନ ଟାରିଟା ବେଳେ । ଏଣୁ ଅନ୍ୟମାନଙ୍କର କ୍ଲବକୁ ଯିବା ସମୟ ତାର ଶୋଇବାର ସମୟ । ଏଣେ ସେଇଟା ହେଲା ଆସାମରେ ବର୍ଷାଦିନ । ଏଇଠି ତୁମକୁ କହି ରଖେ, ଆସାମରେ ପ୍ରକୃତରେ ଦୁଇଟି ଋତୁ । ବର୍ଷା ଓ ଶୀତ । ଏହି ସମୟରେ ଆଜି ଏଠି ପୋଲ ଭାଙ୍ଗିଲାଣି ତ କାଲି ସେଠି ନଈ ରାସ୍ତା ବଦଳାଇ ଦେଇଛି । ପୋଲଟା ଶୃଙ୍ଖଳାରେ ବାଲି ପଡିଆରେ ଠିଆ ହୋଇଛି । ତା ଛଡା ଯେତେ ପର୍ଯ୍ୟନ୍ତ ପୋଲ ତିଆରି ନ ହୋଇଛି ସେତେବେଳେ ପର୍ଯ୍ୟନ୍ତ ତ ଟ୍ରାଫିକ୍ ବନ୍ଦ କରି ହେବ ନାହିଁ । ଏଣୁ ଡଙ୍ଗା

ଯୋଡି ଟାପ ତିଆରି କରି ଟ୍ରାଫିକ୍ ପାର୍ କରାଇବାକୁ ହେବ । ପାଖ ପାଖ ଗାଁରୁ ମିଶିଂ ଜାତିର ମାଝିମାନଙ୍କୁ ଆଣି ଡଙ୍ଗା ପକାଇବାକୁ ହେବ । ତା ଯଦି ନ ହୋଇପାରିଲା ତେବେ ତେଜପୁର ଡେପୁଟି କମିଶନରଙ୍କ ପାଖକୁ ଦଉଡ଼ । କାରଣ ତେଜପୁରରେ ବିହାରୀ ମାଝି ଓ ଡଙ୍ଗା ମିଳିବ । ମୋଟ ଉପରେ ଏଇଟା ମୋର ମଧ ବ୍ୟସ୍ତ ସମୟ । ଶୀତ ଦିନେ ମୋର ଓ ଦୀପକ ଉଭୟଙ୍କର କାମ କମ୍ । ଏଣୁ ଦୁହେଁ ଅନେକ ସମୟରେ ପରସ୍ପରଙ୍କୁ ଦେଖା କରୁ । ଆମ ଦୁହିଁଙ୍କର ଏକ ସଉକ ଥିଲା ବନ୍‌ଶୀ ପକାଇ ମାଛ ଧରିବା । ଦୀପକର ବଗିଚା ଗୋଟିଏ ସୁନ୍ଦର ଓ ଛୋଟ ନଦୀ କୂଳରେ । ତା ବଗିଚାରେ ଏକ ଛୋଟ ମୋଟରବୋଟ୍ ମଧ ଥିଲା । ଏଣୁ ସେ ନଦୀରେ ଆମେ ଅନେକ ସମୟରେ ବୋଟ ନେଇ ଭିନ୍ନ ଭିନ୍ନ ଜାଗାରେ ମାଛ ଧରୁ । ଦୀପକ ପଞ୍ଜାବୀ ଯୁବକ ଠିକ୍ ଯେମିତି ହେବା କଥା । ପ୍ରାୟ ଛଅ ଫୁଟ ଉଚ, ଗୋରା ବଳିଲା ପରି ଦେହ । ଦରମା ସେ ସମୟରେ ମାନେ ବାଆସ୍ତରି ମସିହାରେ ପ୍ରାୟ ସବୁ ମିଶି ଚାରି ହଜାର, ବଙ୍ଗଳା, ଗାଡି, କମ୍ପାନୀ ତରଫରୁ ଚାକରଙ୍କର ଏକ ପଲଟନ । ଏପରି ବରପାତ୍ର ଯେ କିପରି ପକଡାଓ ନ ହୋଇଛି ତା ଭାବିବା କଥା । ଦୀପକକୁ ପଚାରିଲେ କେବଳ କହେ, 'ଯବ୍ କିସ୍‌ମତ୍ ମେଁ ହୋଗା ତୋ ୱହ ଆଜାଏଗୀ ।' ମୁଁ ତାକୁ ଅନେକ ଥର କହିଛି ଯେ ଭଗବାନ ଶ୍ରୀକୃଷ୍ଣଙ୍କୁ ମଧ ବଇଁଶୀଟା ବଜାଇବାକୁ ପଡିଥିଲା । ଏଣୁ ସୁପ୍ତ ସିଂହର ମୁଖରେ ମୃଗୀ ତାର ଗଳା ଦିଏ ନାହିଁ । ସମସ୍ତ କାର୍ଯ୍ୟ ଲାଗି ଉଦ୍‌ଯୋଗ କରିବାକୁ ହେବ । କିନ୍ତୁ ସେ ମୋ କଥାକୁ ବିଶେଷ କାନ ଦେଉ ନଥିଲା । ମୋଟ ଉପରେ ବାପା, ମା, ବିଭା କରି ଦେଇଥିଲେ ହୋଇଥାନ୍ତା । କିନ୍ତୁ ସେ ମଧ ବାପା ମା'ଙ୍କ ଉପରେ କୌଣସି ଚାପ ପକାଇ ନାହିଁ । ପ୍ରଥମ ଶୀତ ଅର୍ଥାତ୍ ନଭେମ୍ବରରୁ ଏପ୍ରିଲ ବେଶ୍ ଆମୋଦରେ କଟିଗଲା । ଦୀପକ ଥିବାରୁ ମୁଁ ବୋର୍ ହୋଇନାହିଁ । ଦୀପକର ଆଉ ଏକ ସଉକ ଥିଲା ପାଶ୍ଚାତ୍ୟ ଶାସ୍ତ୍ରୀୟ ସଙ୍ଗୀତ । ସେ ମୋତେ ଏହି ଦୁନିଆଁ ସାଥିରେ ପରିଚୟ କରାଇଦେଲା । ତା ପାଖରେ ଏକ ଅତି ଉତ୍ତମ ମ୍ୟୁଜିକ୍ ସିଷ୍ଟମ୍ ଥିଲା । ଯେଉଁଥିରେ ସଙ୍ଗୀତ ଶୁଣିଲେ ହଲ୍‌ରେ ବସି ଶୁଣିଲା ପରି ଲାଗୁଥିଲା । ସେ ତ ଏକ ନୂତନ ଦୁନିଆଁ । ମୋତେ ଅବଶ୍ୟ କେତେକ ଅଂଶ ବିରକ୍ତିକର ଲାଗୁଥିଲା । କିନ୍ତୁ ସେହି ସମୟରୁ ଶୋପାଁଙ୍କର ଭକ୍ତ ହୋଇଗଲି । ତାଛଡା ଚା ବଗିଚାର କୁଲିଙ୍କ ଲୋକ-ସଙ୍ଗୀତ ବିଶେଷ କରି ଝୁମୁର୍ ଟେପ୍ ରେକର୍ଡ କରିବା ତାର ଆଉ ଗୋଟିଏ ସଉକ । ମୋତେ ସନ୍ଦେହ ହେଉଥିଲା ଯେ ଏତେ ସଉକ ଭିତରେ ନାରୀ ଜାତି ପ୍ରତି ତାର ଦୃଷ୍ଟି ଦେବାକୁ ସମୟ ହେଉନଥିଲା । ଝୁମୁର୍ ଟେପ୍ କଲାବେଳେ ତାର ଲକ୍ଷ୍ୟ ସ୍ୱର, ତାଳ ଓ କଥା ଉପରେ, କଳାକାର ଉପରେ ନୁହେଁ । କିନ୍ତୁ ଯେଉଁ କଳାକାର ଗଣ ତାକୁ ରୂପାୟିତ କରୁଥାନ୍ତି ସେହି ଶ୍ୟାମାମାନେ ଏପରି ଭୁଲିଯିବାର ବସ୍ତୁ ମଧ ନୁହଁନ୍ତି ।

ପ୍ରଫେସର ମହାନ୍ତି କହିଲେ, 'ସାର୍ ବ୍ୟାଘାତ ଲାଗି କ୍ଷମା ଚାହୁଁଛି, କିନ୍ତୁ ଶ୍ୟାମା

ବିଷୟରେ ଶାସ୍ତ୍ର ବଚନ ଅଛି ।

ଶୀତେ ସୁଖୋଷ୍ଣ ସର୍ବାଙ୍ଗୀ
ଗ୍ରୀଷ୍ମେ ଯା ସୁଖ ଶୀତଳା
ତପ୍ତ କାଞ୍ଚନ ବର୍ଣ୍ଣାଭ
ସା ସ୍ତ୍ରୀ ଶ୍ୟାମା ଇତି କଥ୍ୟତେ ।

ଏମାନେ କ'ଣ ସେହି ପ୍ରକାର ଶ୍ୟାମା ?' କର୍ଣ୍ଣେଲ କହିଲେ ଆରେ ନା-ନା । ମୁଁ କ'ଣ ଡାକ୍ତର ଯେ ସେମାନଙ୍କ ଟେମ୍ପରେଚର ଚାର୍ଟ ତିଆରି କରିବି ? ଶ୍ୟାମା ମାନେ କଳା । ଏ ସରଦି ଗର୍ମି କଥା କହି ପାରିବି ନାହିଁ । ଏମାନେ ତପ୍ତ କାଞ୍ଚନ ବର୍ଣ୍ଣ ନୁହଁନ୍ତି । ସେ ରଙ୍ଗ ମଂଗୋଲଏଡ୍ ଜାତି ମାନଙ୍କରେ ହୁଏ । ଏ ଝିଅମାନେ, କନ୍ଧ, ସାନ୍ତାଳ ଜାତିର ବଂଶଧର । ଏଣୁ ଶ୍ୟାମ ବର୍ଣ୍ଣ, କଳା । ଏହିପରି ଦୀପକ ତାର ମୁକ୍ତ ଅବିବାହିତ ଜୀବନ କାଟି ଚାଲିଥିଲା । ହଠାତ୍ ତାର ଦେହ ଦିନେ ଖରାପ ହେଲା । ବଗିଚାର ଡାକ୍ତର ଦେଖିଲେ । ଦୁଇଦିନ ଧରି ରେମିଶନ ନହେବାରୁ ଡାକ୍ତର ତାକୁ ମାଲିବାଡ଼ି ସେଣ୍ଟ୍ରାଲ ହସ୍‌ପିଟାଲ୍‌କୁ ପଠାଇ ଦେଲେ । ସେଠି ଜଣାପଡ଼ିଲା ଯେ ପାରାଟାଇଫଏଡ୍ । ଏଣୁ ଦଶଦିନ ହସ୍‌ପିଟାଲ୍ ବାସ ।

ମୁଁ ଖବର ପାଇ ଦୁଇ ତିନିଥର ଯାଇଛି । ସେଣ୍ଟ୍ରାଲ ହସ୍‌ପିଟାଲ ଆମ କ୍ୟାମ୍ପ୍‌ଠାରୁ ପ୍ରାୟ ପନ୍ଦର କିଲୋମିଟର । ଏଣୁ ମୁଁ ପ୍ରତିଦିନ ଯିବା ସମ୍ଭବ ନୁହେଁ । ସେଠାର ଗୋଟାଏ ଜିନିଷ ମୋର ଦୃଷ୍ଟି ଏଡ଼ାଇ ନଥିଲା । ସେ ଜଣେ ନର୍ସ । ପ୍ରଥମ ଥର ସେ ଡିଉଟିରେ ଥିଲା । ଅନ୍ୟଦିନ ସେ କୌଣସି ବାହାନାରେ ଦୀପକ ରୁମ୍‌କୁ ଆସୁଥିଲା । ଦିନେ ମୁଁ ବସିଥିବା ବେଳେ ତିନିଥର ଆସିଲା । ଥରେ ଚାର୍ଟ ଚେକ୍ କରିବାକୁ । ଆଉ ଥରେ କଲମଟା ଛାଡିଯାଇଛି କି ବୋଲି ପଚାରିବାକୁ । ଶେଷଥର ଖବରକାଗଜଟା ଦେଇ ଯିବାକୁ । କିନ୍ତୁ ସେ ପର୍ଯ୍ୟନ୍ତ ଦୀପକର ଜ୍ୱର ଥିଲା । ଏଣୁ ଏସବୁ କଥା ତାକୁ ଆଉ ପଚାରି ନାହିଁ । ତେବେ ଲକ୍ଷ୍ୟ କଲି ଯେ ଦୀପକର ଯେତେବେଳେ ଅନ୍ୟଆଡେ ନଜର, ସେତେବେଳେ ସେ ଦୀପକକୁ ଏକ ନଜରରେ ଚାହିଁଥାଏ । କିନ୍ତୁ ଦୀପକ ତା ଆଡ଼କୁ ଦୃଷ୍ଟି ଆଣିବାର ଲକ୍ଷଣ ଦେଖିଲେ ସେ ତତ୍‌କ୍ଷଣାତ୍ ଅନ୍ୟ କାମରେ ଲାଗିଯାଏ । କିନ୍ତୁ ଆହୁରି ମଜାର ବ୍ୟାପାର ଯେ ଦୀପକ ରୁମ୍‌ରେ ଦୀପକ ଛଡ଼ା ଅନ୍ୟ କେହି ଥିଲେ ମଧ ଅନ୍ୟର ଉପସ୍ଥିତି ସମ୍ବନ୍ଧରେ ସେ ମୋଟେ ସଚେତନ ନୁହେଁ । ସେ ତାର ଚାହାଣୀ କେବଳ ଦୀପକ ଠାରୁ ଲୁଚେଇବାର ଚେଷ୍ଟା କରେ । ଆଉ କାହାଠାରୁ ନୁହେଁ । ଏ ସବୁ ପ୍ରତି ମଧ ଗୁରୁତ୍ୱ ଦେଇଥାନ୍ତି ଯଦି ସେ ଝିଅଟି ଅନ୍ୟ ରକମର ହୋଇଥାନ୍ତା । କିନ୍ତୁ ଝିଅଟି ସୁନ୍ଦର ତ ନୁହେଁ । ଏପରି ଅସୁନ୍ଦର ମଧ ନୁହେଁ ଯେ ସେଥିଲାଗି ମନେ ରହିବ । ଝିଅଟି କାଳୀ । ହୁଏତ ଚା' ବଗିଚା କୁଲି ବଂଶର ନଚେତ୍ କେରଳର । ପ୍ରାୟ ପାଞ୍ଚଫୁଟ ଦୁଇ ଇଞ୍ଚ ଉଚ୍ଚ । କିଂଚିତ୍ ମୋଟା ଇଂରେଜୀରେ କହିବା Plump । ଏଣୁ ପ୍ରେମ

ପ୍ରେମ ହୋଇଯିବାର ଭୟ ମୋଟେ ମୋ ମୁଣ୍ଡକୁ ଆସି ନଥିଲା ।

ତା ପରେ ପରେ ମୋତେ ଗୋଟେ ଟ୍ରେନିଂ ଲାଗି ରୁର୍କି ଯିବାକୁ ପଡ଼ିଲା । ଆସିଲା ବେଳକୁ ବର୍ଷା ଋତୁ ଆରମ୍ଭ ହୋଇ ସାରିଛି । ସେ ବର୍ଷ ଇନ୍ଦ୍ରଙ୍କ କୃପା ବେଶ୍ ମାତ୍ରାଧିକ ହେଲା । ଫଳତଃ ମୋତେ ଓ ଦୀପକ ଦୁହିଁଙ୍କୁ ମୋଟେ ଫୁର୍ସତ ନଥିଲା । ମୋ ଇଲାକାରେ ଯେତେ ନଦୀ ନାଳ ଥିଲେ ସମସ୍ତେ ଯୌବନ ମଦମତ୍ତ । ଆଜି ଏଠି ପୋଲ ଧୋଇ ହୋଇଗଲାଣି ତ କାଲି ଏକ କ୍ଷୁଦ୍ରାଦପି କ୍ଷୁଦ୍ର ନାଳ ହଠାତ୍ ତା ରାସ୍ତା ବଦଳାଇ ଶହେଗଜର ଘାଇ କରି ଦେଲାଣି । ଏଠି ବେଲି ବ୍ରିଜ ଲାଗିବ ତ ସେଠି ଟ୍ରକ୍ ପାରି କରିବା ଲାଗି ମାର୍‌ବୋଟ ବା ଟାପର ବ୍ୟବସ୍ଥା କର । କେଉଁଠି ରାସ୍ତା ଅତିରିକ୍ତ କାଦୁଅ । ବଛି ଛାଡ଼ି କାଦୁଅ ପକେଇ ଦେଇଛି । କିନ୍ତୁ ଅନେକ ସମୟରେ ଗାଡ଼ି ଅଟକି ଯାଉଛି । ସେଥିଲାଗି ଟାଣିବା ପାଇଁ ହାତୀ ଭଡ଼ାରେ ଆଣି ମୁତୟନ କରିବା । ଏହିପରି ଅନେକ କାମ । ବର୍ଷା ବେଶି ହେଲେ ଚା' ବଗିଚାରେ ମଧ କାମ ବହୁତ ବଢିଯିବ । ଚା' ତୋଳିବାର ଗୋଟିଏ ପ୍ରୋଗ୍ରାମ୍ ଥାଏ । ଥରେ ଗୋଟେ ଗଛରୁ ତୋଳା ହୋଇଗଲେ ପୁଣି ପତ୍ର କଅଁଳିଲେ ତୋଳା ହେବ । ପତ୍ର ତୋଳିବାରେ ଡେରି କଲେ ପତ୍ର ବୁଢା ହୋଇଯିବ ଓ ଭଲ ଚା' ହେବ ନାହିଁ । ପତ୍ର କଅଁଳିବା ଟା ବର୍ଷା ଉପରେ ନିର୍ଭର । ବେଶି ବର୍ଷା ହେଲେ ପତ୍ର ଶୀଘ୍ର ତୋଳିବାକୁ ହେବ । ଏଣୁ ଫ୍ୟାକ୍ଟ୍ରିକୁ ଯେତେ ପତ୍ର ଆସିବା କଥା ତା ଠାରୁ ବେଶି ଆସିବ । ଫଳତଃ ଦୀପକକୁ ପ୍ରାୟ ଫ୍ୟାକ୍ଟ୍ରିରେ ରହିବାକୁ ପଡ଼ିବ । ଏଣୁ ଆମ ଦୁହିଁଙ୍କ ଯୋଗାଯୋଗ ସମ୍ଭାବନା ମୋଟେ ନଥିଲା ।

ହଠାତ୍ ଦିନେ କ୍ଲବରେ ଗୋଟିଏ ଘଟଣା ଘଟିଲା । ଲଳିତା-ଡାଙ୍ଗ ଚା' କମ୍ପାନୀର ଜେନେରାଲ ମ୍ୟାନେଜର ଜନ୍ ରସ୍‌ଙ୍କ ସାଙ୍ଗରେ ଦେଖା ହେଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ରସ୍ ସାହେବ ବେଙ୍ଗଲ ସାପର୍‌ସ୍‌ରେ କାମ କରୁଥିଲେ । ମୁଁ ମଧ ସେହି ବେଙ୍ଗଲ୍ ସାପର୍‌ସ୍‌ରୁ । ଏଣୁ ଆମ ଦୁହିଁଙ୍କ ଭିତରେ ଏକ ବନ୍ଧୁତା ଥିଲା । ବୟସ୍କ ଲୋକ । ଚା ଶିଳ୍ପରେ ହିଁ ପଚିଶ ବର୍ଷ ହେଲାଣି । ମୋତେ କହିଲେ, 'ତୁମ ସାଙ୍ଗେ ଟିକିଏ କଥା ଅଛି ଚାଲ ଲନ୍‌ରେ ବସିବା ।'

ଲନ୍‌ରେ ବେତ ଚଉକିରେ ବସିଲା ପରେ ରସ୍ ମୋତେ ପଚାରିଲେ, 'ତୁମେ ଦୀପକ ଅରୋରାର ନିକଟ ବନ୍ଧୁ ବୋଲି ଶୁଣିଛି । ଠିକ୍ କଥା ?'

ମୁଁ କହିଲି, 'ହଁ ଆପଣ ସେଇୟା କହିପାରନ୍ତି, ଆମର ଅନେକ ସମାନ ସଉକି ଅଛି । ତେବେ ପ୍ରାୟ ମାସେ ହେଲା ଦେଖା ହୋଇନି । କଣ କିଛି ହେଲା କି ? ଭଲ ଅଛି ତ ?'

ରସ୍ ଉତ୍ତର ଦେଲେ 'ନା-ନା ଚିନ୍ତା କର ନାହିଁ । ସେ ଭଲ ଅଛି । କିନ୍ତୁ ତୁମେ କ'ଣ ତାର ପରିବାରକୁ ଜାଣ ?'

ମୁଁ କହିଲି, 'ନା, ବ୍ୟାପାର କ'ଣ ?'

ରସ୍, 'ଦେଖ ଇଣ୍ଡିଆରେ ବାପା ମା' ବାହା କରିବାଟା ତ ପ୍ରଥା । ତା'ପରେ ଏଠି ସେ ବାହା ହେବାକୁ ଝିଅ ନିଜେ ଖୋଜିଲେ ବା ପାଇବ କେଉଁଠି । ଏଣୁ ତୁମେ ଯଦି ତା ବାପା ମା'ଙ୍କ ଉପରେ ଚାପ ପକା ନ୍ତ, ବନ୍ଧୁ ହିସାବରେ, ତା'ହେଲେ ଭଲ ହୁଅନ୍ତା । ତୁମେ ଭାବୁଥିବ ଏଥିରେ ମୋର କ'ଣ ଅଛି । ଆଉ ତୁମେ ଏ କଥା ତ ଜାଣ ଯେ ଭଲ ଶିଷ୍ୟ ଯେ କୌଣସି ଗୁରୁ ପକ୍ଷରେ ବରଦାନ । ଦୀପକର ଟା'କୁ ପ୍ରସେସ୍ (process) କରିବାରେ ଏକ ଈଶ୍ୱରଦତ୍ତ କ୍ଷମତା ଅଛି । କେଉଁ ସମୟରେ କ'ଣ କରିବା ହେବ ତାର ନିର୍ଣ୍ଣୟ ନିର୍ଭୁଲ୍ । ତା ପରେ Tasting ରେ ଯେ କୌଣସି tea-taster ସାମନାରେ ଛିଡା ହୋଇପାରିବ । ତାର ଭବିଷ୍ୟତ ଉଜ୍ଜ୍ୱଳ ବୋଲି ଏ ପର୍ଯ୍ୟନ୍ତ କହିହେବ । ତେବେ ଦୁର୍ଭାଗ୍ୟକ୍ରମେ ଏକ ଉଡ଼ା ଉଡ଼ା ଗୁଜବ ଶୁଣୁଛି । କେତେଦୂର ସତ ଜାଣେ ନାହିଁ । ସେ କୁଆଡେ ମାଲିବାଡି ହସ୍ପିଟାଲ୍‌ର ଏକ ଷ୍ଟାଫ୍ ନର୍ସ ସାଙ୍ଗରେ ଦେଖାସାକ୍ଷାତ କରୁଛି । ହୁଏତ ବ୍ୟାପାରଟା କିଛି ନ ହୋଇଥାଇପାରେ । ଦୀପକ ତ ବେଶ୍ କେତେଦିନ ହସ୍ପିଟାଲ୍‌ରେ ଥିଲା । ଥରେ ଅଧେ ଧନ୍ୟବାଦ୍ ଦେବାକୁ ବା ଧନ୍ୟବାଦ ସ୍ୱରୂପ ପ୍ରେଜେଣ୍ଟ ଗୋଟିଏ ମଧ ଦେବାକୁ ଯାଇଥାଇପାରେ । ଭଗବାନ କରନ୍ତୁ । ତାହା ହିଁ ହୋଇଥାଉ । ତଥାପି ମ୍ୟାନେଜ୍‌ମେଣ୍ଟ କ୍ୟାଡ଼ର୍‌ର ଅଫିସର୍ ଷ୍ଟାଫ୍ ନର୍ସ ସହିତ ଦେଖା କରିବା କ'ଣ ଉଚିତ୍ ? ଏଥିରେ ଲୋକେ ବେଦରକାରୀ କଥା ବଢ଼ାଇବେ । ଏଣୁ ତୁମେ ଏ ବିଷୟରେ ତା ସାଥିରେ କଥା ହୁଅ । ତାକୁ ଗୋଟିଏ ଉପଯୁକ୍ତ ଯୁବତୀକୁ ବାହା ହେବାକୁ ପ୍ରବର୍ତ୍ତାଅ । ତୁମେ ଜାଣ ନାହିଁ, ମ୍ୟାନେଜ୍‌ମେଣ୍ଟ କ୍ୟାଡ଼ର୍‌ରେ ଉପଯୁକ୍ତ ସ୍ତ୍ରୀ କିପରି ସ୍ୱାମୀର ସହାୟ ହୋଇପାରେ । ଯଦି ସେ ଚିରକାଳ ଲାଗି ବଗିଚାରେ ରହିବାକୁ ନ ଚାହେଁ ଓ ଯଦି ତାର ଉଚ୍ଚାକାଂକ୍ଷା ଅଛି ଯେ ସେ ବୋର୍ଡ ଅଫ୍ ଡାଇରେକ୍ଟରସ୍‌କୁ ଉଠିବ, ତା'ହେଲେ ତାକୁ ଏକ ଉପଯୁକ୍ତ ସ୍ତ୍ରୀ ଯୋଗାଡ କରିବାକୁ ପଡ଼ିବ, ଯେ ଏକ ଉପଯୁକ୍ତ ହୋସ୍‌ଟେସ୍ ହୋଇପାରିବ, ଯେ ତାର ସ୍ୱାମୀର କେରିଅରକୁ ନିଜ କେରିଅର ବୋଲି ଭାବିବ, ଯେ ବୋର୍ଡ ମେମ୍ବରମାନଙ୍କ ସ୍ତ୍ରୀମାନଙ୍କୁ ହାତରେ ରଖିପାରିବ । ଅନେକ ପ୍ରମିଜିଂ (promising) ଆସିଷ୍ଟାଣ୍ଟ ଉପରକୁ ଉଠିପାରିଲେ ନାହିଁ, ଠିକ୍ ଏହି କାରଣରୁ । ତୁମେ ଗଡତୁବା ବଗିଚାର ଫ୍ୟାକ୍ଟ୍ରି ଆସିଷ୍ଟାଣ୍ଟ ସ୍କଟ୍‌କୁ ଜାଣିଛ । ସେ ମ୍ୟାନେଜର ମଧ ହୋଇପାରିବ କି ନାହିଁ । କାରଣ ସେ ଏକ କୁଲି ଝିଅକୁ ବାହା ହୋଇଛି । ତା ସ୍ତ୍ରୀକୁ ମାଷ୍ଟର ରଖି ଇଂଲିଶ ପଢେଇ କ୍ଲବ ଯିବାର ଯୋଗ୍ୟ କଲା । କିନ୍ତୁ କ୍ଲବ୍‌ରେ ଅନ୍ୟ ମହିଳାମାନେ ତାକୁ ପୂରା ବୟକଟ୍ କରିଦେଲେ । ତାର ଉପସ୍ଥିତିକୁ ଏପରି ଉପେକ୍ଷା କରାଗଲା ଯେ ସେ ବିଚାରୀ ତ ଲଜ୍ଜା ଅପମାନରେ ପ୍ରାୟ ମାନସିକ ରୋଗୀ ହୋଇ ଯାଇଥିଲା । ସେତେବେଳେ ମୋର ଉପଦେଶ ମାନି ସ୍କଟ୍ ତାକୁ ହୋମ୍ ଲିଭ୍‌ରେ ବିଲାତ ନେଇଗଲା । ସେଥିରେ ତାର ଧାରଣା ହୋଇଗଲା ଯେ ପ୍ଲାଣ୍ଟରସ୍ କ୍ଲବ୍ ହିଁ ସଂସାର ନୁହେଁ । କିନ୍ତୁ ପ୍ରତିଜ୍ଞା କଲା ଯେ ସେ କେବେ

କ୍ଲବ୍ ଯିବ ନାହିଁ ଏବଂ ସେ ମହିଳାମାନଙ୍କ ସାଙ୍ଗେ ସାମାଜିକ ମିଳାମିଶା କରିବ ନାହିଁ । ଯାହା ଘଟିଥିଲା ତା'ପରେ ଏହା ତ ସ୍ୱାଭାବିକ । କିନ୍ତୁ ସ୍କଟ୍‌ର କ୍ୟାରିଅର ମାଟି ହୋଇଗଲା । ଏଇଥିଲାଗି ଦୀପକ ବିଷୟରେ ମୋର ଦୁଶ୍ଚିନ୍ତା । ଯଦି କୌଣସି ଭୁଲ୍ କରିବସେ ତା'ହେଲେ ମାରୱାଡି ମାଲିକ ପାଖରେ କାମ କରିବା ଛଡ଼ା ଆଉ ଉପାୟ ନଥାଇ ପାରେ ।'

ଏଠି ଟୀ' ବଗିଚାର ବର୍ଣ୍ଣାଶ୍ରମ ଧର୍ମ ବିଷୟରେ ଟିକିଏ କହିଲେ ଅପ୍ରାସଙ୍ଗିକ ହେବ ନାହିଁ । ଏ ସମାଜରେ ବର୍ଣ୍ଣାଶ୍ରମ ଧର୍ମ ଅତି କଠୋର । ଦ୍ୱିଜ୍ ବ୍ରାହ୍ମଣ କ୍ଷତ୍ରିୟ ହେଲେ ମ୍ୟାନେଜ୍‌ମେଣ୍ଟ କାଡ଼ର । ଆସିଷ୍ଟାଣ୍ଟ ଠାରୁ ଆରମ୍ଭ କରି ଜେନେରାଲ ମ୍ୟାନେଜର ପର୍ଯ୍ୟନ୍ତ । ତା ଉପରେ ରାଜ ଚକ୍ରବର୍ତ୍ତୀ ପରି ବୋର୍ଡ ମେମ୍ବରମାନେ । ବୈଶ୍ୟ ହେଲେ ବାବୁ ଗୋଷ୍ଠୀ । ଏଥିରେ କିରାନୀ, ହେଡ୍‌କ୍ଲର୍କ, ଓଭର୍‌ସିଅର, ସୁପରଭାଇଜର, ଟାଇମ୍‌କିପର ସାମିଲ । ଶୁଦ୍ର ହେଲେ କୁଲି, ସରଦାର, ମେଟ୍, ମିସ୍ତ୍ରୀ ଆଦି ଶାରୀରିକ ପରିଶ୍ରମ କଲାବାଲା । ଏବଂ ହିନ୍ଦୁ ଶାସ୍ତ୍ରରେ ବ୍ରାହ୍ମଣ ପତିତ ହୋଇ ଯେପରି ବ୍ରାତ୍ୟ ହୋଇଯାଏ, ସେହିପରି ମାରୱାଡି ମାଲିକାନାର ବଗିଚାରେ ମ୍ୟାନେଜର ପତିତ, ବ୍ରାତ୍ୟ । ମାର୍‌ୱାଡି ବଗିଚା ମାନେ ବିରଲା ବା କାନୋରିଙ୍କ କମ୍ପାନୀ କଥା ହେଉନି । ଆସାମରେ ଅନେକ ମାରୱାଡ଼ି ଅନ୍ୟ ବ୍ୟବସାୟରେ ପଇସା କଲା ପରେ, ଟୀ' ବଗିଚା କିଣନ୍ତି । ସେମାନେ ଟୀ' ଶିଳ୍ପର ଗହନ ତତ୍ତ୍ୱର ଧାର ଧାରନ୍ତି ନାହିଁ । ତାଙ୍କର ଉଦ୍ଦେଶ୍ୟ ହେଲା କିପରି ଶୀଘ୍ର ପଇସା କରିବା । ସେମାନେ ଶ୍ରମିକ ଓ ଟୀ' ଗଛ, ଉଭୟଙ୍କର ରକ୍ତ ଶୋଷଣ କରନ୍ତି । ଟୀ' ଗଛର ରକ୍ତ ଶୋଷଣ ହେଲା– ଗଛର ଯତ୍ନ ନ ନେଇ ବର୍ଷସାରା ପତ୍ର ତୋଳିବା । ଏମାନେ ମ୍ୟାନେଜରଙ୍କୁ ଦରମା ଦିଅନ୍ତି କମ୍ । ବଙ୍ଗଳା ତ ପୂର୍ବର ଅଛି । କିନ୍ତୁ ଆସବାବ୍‌ପତ୍ର ଚାକରବାକର ଜୌଲୁସ ନାହିଁ । ମ୍ୟାନେଜରଙ୍କୁ ମାଲିକର ମାରୱାଡ଼ି ମୁନିବ ମଧ ଦି କଥା ଶୁଣାଇ ଦିଏ । ଏପରି ମାଲିକଙ୍କ ପାଖରେ ସାଧାରଣତଃ ଗୋଟିଏ ଛୋଟ ବଗିଚା ଥାଏ । ଅବଶ୍ୟ ଛୋଟ ଅର୍ଥ ପ୍ରାୟ ଚାରିଶହ ଏକର ଏବଂ ଅନେକ ସମୟରେ ମାଲିକମାନେ ଇଣ୍ଡିଆନ୍ ଟି' ଆସୋସିଏସନର ମେମ୍ବର ଫିଜ୍ ଦେବାକୁ ନାରାଜ ହୋଇଥିବାରୁ ମାନେଜରମାନେ ପ୍ଲାଣ୍ଟରସ୍ କ୍ଲବ୍‌ର ମେମ୍ବର ମଧ ନୁହଁନ୍ତି । ଏଣୁ ଅନ୍ୟମାନେ ତାଙ୍କୁ ଦୟା ଓ ଘୃଣାର ଚକ୍ଷୁରେ ଦେଖିଥାନ୍ତି । ଅତଏବ ରସ୍ ସାହେବ ତାଙ୍କ ପ୍ରିୟ ଶିଷ୍ୟ ଦୀପକ ଆରୋରାଙ୍କୁ ଏହି ଦୁର୍ଭାଗ୍ୟରୁ ବଞ୍ଚାଇବାକୁ ବଦ୍ଧ ପରିକର ।

ମୁଁ ମଧ ବେଶ୍ ଚିନ୍ତିତ ହୋଇ ପଡ଼ିଲି । ଏ ସମସ୍ୟା ବାହାରର ଲୋକଙ୍କୁ ସେପରି ଗମ୍ଭୀର ମନେ ନ ହୋଇପାରେ । ବରଂ କେତେକଟା ହାସ୍ୟାସ୍ପଦ ମନେ ହୋଇପାରେ । କିନ୍ତୁ ରସ୍ ସାହେବ ଯାହା କହିଲେ ତା ଠିକ୍ । ଏଣୁ ମୁଁ ମଧ ଠିକ୍ କଲି ଯେ ଦୀପକ ସାଙ୍ଗେ ଦେଖା କରିବାକୁ ହେବ । ଦୁଇଦିନ କାର୍ଯ୍ୟବ୍ୟସ୍ତ ଥିଲି । ତୃତୀୟ ଦିନ ସକାଳୁ ବାହାରିଲି । ତାଙ୍କୁ ବ୍ରେକ୍‌ଫାଷ୍ଟ ବେଳେ ଧରିବି । ତାଙ୍କୁ ବଙ୍ଗଳାରେ ପାଇଲି ନାହିଁ । ଏଣୁ ଫ୍ୟାକ୍ଟ୍ରିରେ ପହଞ୍ଚିଲି ।

ଦୀପକ ହଠାତ୍ କାହିଁକି ମୋତେ ପତ୍ରକୁ ଟା' କରିବାର ବିଭିନ୍ନ ପଦ୍ଧତି ବିଷୟରେ ବହୁତ ବୁଝାଇବା ଆରମ୍ଭ କଲା । ଏଥର ଲଣ୍ଡନ ନିଲାମରେ ତା ବଗିଚାର ପତ୍ର କେତେ ଦାମ୍ ହୋଇଛି ସେ ବିଷୟରେ ବୁଝାଇଲା । ମୋତେ ସନ୍ଦେହ ହେଲା ଯେ ମୁଁ କେଉଁଥିପାଇଁ ଆସିଛି ସେ ଅନୁମାନ କରିପାରି ଏବଂ ଠିକ୍ ସେହି ଜିନିଷଟାକୁ ସେ ଆଡେଇ ଯିବାର ଚେଷ୍ଟା କରୁଛି । ମୋର ଆହୁରି ଧାରଣା ହେଲା ଯେ ସେ କୌଣସି ଏକ ବ୍ୟାପାର ଖାଲି ମୋଠାରୁ ନୁହେଁ, ନିଜଠାରୁ ମଧ ଲୁଚାଇବାକୁ ଚେଷ୍ଟା କରୁଛି ।

ମୁଁ ଦୀପକକୁ ଏକ ପ୍ରକାର ଜବରଦସ୍ତି ତା ବଙ୍ଗଳାକୁ ନେଇଗଲି । ସେଠି ଆଉ ଗୌରଚନ୍ଦ୍ରିକା ନକରି ସିଧାସଳଖ ପଚାରିଲି, 'ବଡ ଗୁଜବ ଯେ ତୁ ମାଲିବାଡି ହସ୍‌ପିଟାଲ୍‌ର ଏକ ଷ୍ଟାଫ୍ ନର୍ସ ପାଖକୁ ବହୁତ ଯିବାଆସିବା କରୁଛୁ ଓ ହୁଏତ ତୁ ତାର ପ୍ରେମରେ ପଡିସାରିଲୁଣି । ମୋର ପ୍ରଶ୍ନ ହେଲା, ପ୍ରଥମତଃ ଏହା କ'ଣ ସତ । ଦ୍ୱିତୀୟତଃ ଏ କ'ଣ ସେହି କାଳୀ ଟୋକି ଯେ ତୋ କେବିନ୍‌କୁ ବିନା କାରଣରେ ଦଉଡୁଥିଲା ଏବଂ ଶେଷତଃ ଯଦି ସତ ହୋଇଥାଏ ତା' ହେଲେ ଏହା ତୋର ଭବିଷ୍ୟତ ଚାକିରୀ ଜୀବନ ଉପରେ ଭୀଷଣ ବିପଦ । କାହିଁକି ତୁ ଭଲ କରି ଜାଣୁ । ଏଣୁ ଏ ବିଷୟରେ ତୁ କରୁଛୁ କ'ଣ ?'

ଦୀପକ ଉତ୍ତର ଦେଲା, 'ଏହା ତ ଷ୍ଟାଲିନର ରୁଷିଆ ଓ ହିଟ୍‌ଲର ଜର୍ମାନୀକୁ ବଳିଗଲା । ମୁଁ ଭାବିଥିଲି କେହି ଜାଣିନଥିବେ । କାରଣ ଥରେ ମୁଁ ହସ୍‌ପିଟାଲ୍‌କୁ ଓ ଥରେ ନିର୍ମଳାର ଘରକୁ ଯାଇଛି । ଆଉ ଥରେ ବିଶ୍ୱନାଥ ଚାରାଲି ବଜାରରେ ଦେଖା ଯାହାକି ସମ୍ପୂର୍ଣ୍ଣ ଆକସ୍ମିକ । ଲୋକେ ଏ କଥା ଜାଣିଲେ କିପରି ଏବଂ ତୋତେ କହିଲା କିଏ ?'

ମୁଁ କହିଲି, 'ସେ କଥା ଛାଡ଼ । ତାର ପ୍ରଧାନ କାରଣ ତୁମମାନଙ୍କ ଘରେ ଚାକରଙ୍କ ପଟୁଆର । ଏଣୁ ତୁମର କୌଣସି କଥା ଗୋପନ ରହିପାରେ ନାହିଁ । ଏଥିରୁ ଜଣା ପଡିଲା ଯେ ଝିଅଟିର ନାମ ନିର୍ମଳା । ସେ କଣ ସେହି ଝିଅ ଯାହା ବିଷୟରେ ମୁଁ ପଚାରିଥିଲି । ଏଥର ମୋର ସମସ୍ତ ପ୍ରଶ୍ନର ଉତ୍ତର ଦେ । ସେଥିରେ ମୋ ଅପେକ୍ଷା ତୋର ବେଶି ଉପକାର ହେବ । କାରଣ ତୁ ମୋର ପ୍ରଶ୍ନର ଉତ୍ତର ଦେବାରେ ତୋର ସମସ୍ୟାଟାକୁ ଅନେକ ବେଶି ଯୁକ୍ତିଯୁକ୍ତ ଅର୍ଥାତ୍ Rational ଭାବରେ ଦେଖିପାରିବୁ ଓ ତାହା ହୁଏତ ସମସ୍ୟାର ସମାଧାନ ପାଇବାକୁ ସାହାଯ୍ୟ କରିପାରେ ।'

ଦୀପକ କହିଲା, 'ଗିରି, ତୁ ଠିକ୍ କହୁଛୁ । ମୋର ସମସ୍ୟାଟା କ'ଣ ମୁଁ ତାକୁ ଠିକ୍ ଭାବରେ ଧରିପାରୁନି । ତାକୁ ନିର୍ଦ୍ଦିଷ୍ଟ ରୂପରେଖ ଦେଇପାରୁନି ଏବଂ ତା ଫଳରେ ଅନ୍ଧକାର ପରି ମୋତେ ଚାରିଆଡୁ ଗ୍ରାସ କରି ଆସୁଛି । ହଁ, ନିର୍ମଳା ସେଇ ନର୍ସ । ତାଙ୍କୁ ବାହାହେଲେ ଯେ ଭବିଷ୍ୟତ ଉପରେ ଆଘାତ ଆସିବ ତା ମୁଁ ଭଲ କରି ଜାଣିଛି । କିନ୍ତୁ,'

ମୁଁ କହିଲି, 'ଦୀପକ ଏଣୁ ତେଣୁ କଥା ଛାଡ । ପ୍ରଥମେ ପ୍ରଥମରୁ ଆରମ୍ଭ କର ତୋର

ହସ୍‌ପିଟାଲ ଯିବାଠାରୁ ।'

ଦୀପକ କହିଲା 'ହସ୍‌ପିଟାଲ୍‌କୁ ତ ଏକ ପ୍ରକାର ଡାକ୍ତର ହଜାରିକା ଜବରଦସ୍ତି ପଠାଇଦେଲେ । ନ ହେଲେ ବଙ୍ଗଳାରେ ରହି କ'ଣ ପାରାଟାଇଫଏଡ୍ ଚିକିତ୍ସା ହୋଇପାରି ନଥାନ୍ତା ? ଯାହା କପାଳରେ ଥାଏ । ପ୍ରଥମ ତିନି ଚାରି ଦିନ ତ ବେଶି ଜର ରହୁଥିଲା । ଏଣୁ କିଛି ଲକ୍ଷ୍ୟ କରିବାର ଉପାୟ ନଥିଲା । ପରେ ଯେତେବେଳେ ଦେହ ଟିକିଏ ଭଲ ହେଲା ମୁଁ ନିର୍ମଳାକୁ ଲକ୍ଷ୍ୟ କଲି । ସେ ମୋତେ ଖାଲି ଚାହୁଁଛି । ଅବଶ୍ୟ ସେତେବେଳେ ସେ କଣ ଭାବୁଛି ମୁଁ ଜାଣିପାରୁନି । ମୁଁ ପ୍ରଥମେ ଭାବିଥିଲି ହୁଏତ ମୋ ସାଙ୍ଗରେ କାହାର ସମାନତା ଲକ୍ଷ୍ୟ କରୁଛି । କିନ୍ତୁ ମୁଁ ଅଫିସର୍ ହୋଇଥିବାରୁ ସାହସ କରି ପଚାରିପାରୁନି । ଏଣୁ ଦିନେ ମୁଁ ତାକୁ ପଚାରିଲି ଯେ ସେ କ'ଣ ମୋ ସହିତ କାହାର ସାଦୃଶ୍ୟ ଦେଖୁଛି । ତାପରେ ଯାହା ହେଲା ତ ଅବର୍ଣ୍ଣନୀୟ । ମୁଁ କାହିଁକି ଏ ପ୍ରଶ୍ନ ପଚାରିଥାନ୍ତି । ଆଉ ଯଦି ଏହା ପଚାରି ନଥାନ୍ତି, ତାହେଲେ ବର୍ତ୍ତମାନ ଯାହା ହୋଇଛି ତା ସବୁ ହୁଏତ ହୋଇନଥାନ୍ତା ।'

ଦୀପକ ଟିକିଏ ରହି ଗୋଟିଏ ସିଗାରେଟ୍ ଧରାଇଲା । ତାପରେ କିଛି ସମୟ ଧୂଆଁକୁ ଚାହିଁରହି ପୁଣି ଆରମ୍ଭ କଲା, 'ନିର୍ମଳାର ଦେହରେ ଓ ମୁହଁରେ କିଛି ବାରିବାର ନାହିଁ । କିନ୍ତୁ ତାର ଆଖି । ଓଃ ! ହଠାତ୍ ଦେଖିଲି ସେଥିରେ ଏକ ଅସମ୍ଭବ ରକମର କଷ୍ଟ ଓ ଆତଙ୍କର ଛାପ । ଅନେକ ସଦ୍ୟ ମରା ହୋଇଥିବା ଜନ୍ତୁଙ୍କ ଆଖିରେ ତାହାର ଆଭାସ ଦେଖିଛି । କିନ୍ତୁ ଏହା ଯେପରି ଅନେକ ବେଶି ଗଭୀର । ମୋତେ ତ ନିଜେ ଭୟ ଲାଗିଲା । ଏଣୁ କଥାଟା ବୁଲେଇ ଦେଲି । ତାକୁ ମୋ ବିଛଣା ଚାଦରଟା ବଦଳେଇ ଦେବାକୁ କହିଲି । ସେ ଯେପରି ବଞ୍ଚିଗଲା ଏବଂ ଏକ ଜେଲ୍‌ଖାନାରୁ ଉଦ୍ଧାର ପାଇଗଲା । ସାଙ୍ଗେ ସାଙ୍ଗେ ପ୍ରାୟ ଦଉଡ଼ି ଯାଇ ଷ୍ଟୋର୍‌ରୁ ବିଛଣା ନେଇ ଆସିଲା । ମୋତେ ଧରିନେଇ ଆରାମ ଚଉକିରେ ବସାଇଦେଲା । ତା'ପରେ ବିଛଣା ଝାଡ଼ିଲା । ବିଛଣାଟା ପୁଣିଥରେ ପକାଇଲା । ସ୍ପଷ୍ଟ ଯେ ଏଇସବୁ କାମର ଦ୍ୱାରାରେ ତାର ହୃଦୟର ଆବେଗର ମେଘକୁ ଉଡ଼ାଇ ଦେବାର ଚେଷ୍ଟା କରୁଛି । ଯେତେବେଳେ ଦୁଇ ତିନି ଦିନ ପରେ ଜାଣି ପାରିଲା ଯେ ମୁଁ ରାଗିନାହିଁ ଏବଂ ରିପୋର୍ଟ ମଧ କରିନାହିଁ, ସେତେବେଳେ ତାର ଆତ୍ମବିଶ୍ୱାସ ଟିକିଏ ବଢ଼ିଲା । ସେ ଲୁଚି ଲୁଚି ଚାହିଁବା ବଦଳରେ କଥା ହେବାର ସାହସ କଲା । ପ୍ରଥମେ ଆରମ୍ଭ କଲା ଯେ ଆପଣଙ୍କ ପରି ଅଫିସର ମାନଙ୍କ ସେବା କରିବା କି ସୌଭାଗ୍ୟ । ଆମେ ତ ନର୍ସ, ଜୀବନଟାଯାକ ନର୍ସ ହିଁ ରହିବୁ । ସେଇ ଅଳ୍ପ ଟିକିଏ ହେର୍‌ଫେର୍ । କିଏ ଟିଉଟ୍‌ର ହୋଇଯିବ ତ କିଏ ମେଟ୍ରନ୍ । ତେବେ ଆପଣଙ୍କର ସେବା କରୁଥିଲେ ହୁଏତ ଭବିଷ୍ୟତରେ ଭାଇଟିର ବା ପୁତୁରାର ଚାକିରି କରାଇ ଦେବେ । ସ୍ପଷ୍ଟତଃ ନିଜର ଅସଲ ଉଦ୍ଦେଶ୍ୟକୁ ଏକ କ୍ଷୁଦ୍ର ସ୍ୱାର୍ଥପରତା ପଛରେ ଲୁଚାଇବାର ଚେଷ୍ଟା କରୁଛି ।

'କିନ୍ତୁ ଗିରି, ଯେତେ ଥର ତା ସାଙ୍ଗେ କଥା ହୋଇଛି, ମୁଁ ତା ଆଖିକୁ ଚାହିଁବାକୁ ବାଧ୍ୟ ହୋଇଛି ପ୍ରାୟ ହିପ୍‌ନୋଟିକ୍ ।'

ମୁଁ କହିଲି, 'ମୀର୍ ଉନ୍ ନୀମ୍‌ବାଜ୍ ଆଖୋଁ ମେଁ ସାରୀ ମସ୍ତୀ ଶରାବ୍ କୀ ସୀ ହୈ ।'

ଦୀପକ ଉତ୍ତର ଦେଲା, 'ନା, ନା, ଯାହା ଭାବୁଛୁ ତା ନୁହେଁ । ପୂରା ଖୋଲା । ସେଠି ମଦିରାର ମାଦକତା ନଥିଲା । ଥିଲା ଆଉ କିଛି, ଶରାବୀ ଆଖି କ୍ଲବରେ କ'ଣ ଦେଖିବାକୁ ମିଳେ ନାହିଁ ? ଭଗବାନ ଯାହାଙ୍କୁ ସେ ବିପଦ ଦେଇ ନାହାଁନ୍ତି, ସେମାନେ ମଧ ମ୍ୟାସ୍‌କାରା ଓ ଆଇ ଶାଡ଼ୋ ଲଗାଇ ତା ସୃଷ୍ଟି କରନ୍ତି । କିନ୍ତୁ ଏଠି ବିଲ୍‌କୁଲ ଅଲଗା ମାଲ୍ । ତା ଆଖିର ତୁଳନା ବ୍ରହ୍ମପୁତ୍ରର ବିସ୍ତାର ସାଙ୍ଗେ ହୁଏତ କରିହେବ । ତା ଆଖି ସାଧାରଣତଃ ବ୍ରହ୍ମପୁତ୍ର ଉପରେ ସକାଳ ହେଉଥିଲା ପରି । ଆଲୁଅ ଓ ଅନ୍ଧାର ଉଭୟ ପରସ୍ପର ସାଙ୍ଗେ ମିଶି ଯାଉଛନ୍ତି । ପୁଣି ଅଲଗା ହୋଇ ଯାଉଛନ୍ତି । କେତେବେଳେ ପୁଣି ସୂର୍ଯ୍ୟାସ୍ତ ପରି । ସତେ ଯେପରି ଇନ୍ଦ୍ରଧନୁର ସବୁ ରଙ୍ଗ ଏକାଠି ଖେଳୁଛନ୍ତି । ଏପରି ଆଉ କେତେ କ'ଣ । ଚେଷ୍ଟା କଲେ ମଧ କହିପାରିବି ନାହିଁ ।

'ମୁଁ ହସ୍‌ପିଟାଲ୍‌ରୁ ଫେରିଲା ସମୟରେ ନିର୍ମଳା ସେଠି ନଥିଲା । ଏଇଟା ତାର ଖୁବ୍ ବୁଦ୍ଧିମାନ କାମ । କାରଣ ଏ ସମୟରେ ଯଦି କାନ୍ଦି ଦେଇଥାଆନ୍ତା ତ ସମସ୍ତଙ୍କ ଆଗରେ ଧରା ପଡିଯାଇଥାଆନ୍ତା । ମୁଁ ବଗିଚାକୁ ଫେରି ଆସିଲି । କିନ୍ତୁ ନିର୍ମଳାର ଆଖି ସବୁବେଳେ ମନେ ପଡିଲା । ଏ ପର୍ଯ୍ୟନ୍ତ କୌଣସି ଲୋକ ବା ବସ୍ତୁ ମୋର ଚେତନା ଉପରେ ଏତେ ମାଡି ବସି ନଥିଲା । ଗୋଟାଏ ଉଚ୍ଛୃଙ୍ଖଳ କାମନା ହେଉଥିଲା, ଥରେ ମାଲିବାଡି ଯାଇ ନିର୍ମଳାକୁ ଦେଖା କରିଦେଇ ଆସେ କିନ୍ତୁ ସାଙ୍ଗେ ସାଙ୍ଗେ ବିବେକ କହୁଥିଲା ଯେ ଦେଖା ଥରେ ହେଲେ ଥରକରେ ରହିବ ନାହିଁ । ବହୁଥର ହେବ । ତାର ପରିଣତି ହେବ ଯେ ମୋତେ ଜେନେରାଲ ମ୍ୟାନେଜର ଡକାଇ ପଠାଇବ ଓ ଚାକିରିରୁ ଇସ୍ତଫା ଦେବାକୁ ଅନୁରୋଧ କରିବ ଏବଂ ଯଦି ଅନୁରୋଧ ରକ୍ଷା ନକରେ, ତେବେ ତିନିମାସ ନୋଟିସ୍ । ସାତଦିନ ଯେଉଁ ଦ୍ୱନ୍ଦରେ କାଟିଛି ତା ମୁଁ ଜାଣେ । ଶେଷରେ ଦେଖିଲି ନ ଯାଇ ଉପାୟ ନାହିଁ । ତେବେ ସ୍ଥିର କଲି ହସ୍‌ପିଟାଲକୁ ଯିବି ନାହିଁ । ଆଗ ସେ କେଉଁଠି ରହୁଛି ଖବର ନେବି । ହୁଏତ ସେ ନିକଟବର୍ତ୍ତୀ ବିଶ୍ୱନାଥ ଟାଉନ୍‌ରେ ରହୁଥିବ । ତା ହେଲେ ତା ଘରେ ଦେଖା କରିବା ନିରାପଦ ହୋଇପାରେ । ଏ ଖବର କାହା ପାଖରୁ ନେବି । ବଗିଚାରେ କାହାକୁ ପଚାରିଲେ ତ ଖବରଟା ବ୍ୟାପିଯିବ । ଏଣୁ ଦୋକାନଦାର ରାମନିୱାସ ମାରୱାଡି ପାଖକୁ ଗଲି । ରାମନିୱାସ ନିରାପଦ କାରଣ ସେ ବେଦରକାରୀ କଥା କହେ ନାହିଁ । ତାକୁ ଯାଇ କହିଲି ଯେ ନିର୍ମଳା ନର୍ସ ମୋର ବହୁତ ସେବା କରିଛି । ତାକୁ ଗୋଟିଏ ଶାଢି ଦେବାକୁ ଓ ତାର ଠିକଣା ଆଣିବାକୁ କହିଲି ଯେପରି ଉପହାରଟା ପାର୍ସଲ କରି ପଠାଇଦେବି । ତା ପାଇଲି । ଶାଢୀଟାକୁ ପାର୍ସଲ

ପ୍ୟାକିଂ ରାମ ନିୱାସ ଦୋକାନରେ ହିଁ କରାଇନେଲି । ତା ପରଦିନ ଛୁଟି ନେଲି । ନର୍ଥ ଲକ୍ଷ୍ମୀପୁର ଯିବାକୁ ପ୍ଲେନ୍ ଟିକେଟ କରାଇବାକୁ। ଏହି ବାହାନା କରି ଫେରାଇ ବଜାରରେ ବସ୍ ଧରିଲି । ଅବଶ୍ୟ ବିଶ୍ୱନାଥ ଚାରାଲି ଟାଉନରେ ଓହ୍ଲାଇଗଲି ।

'ବାଟ ପଚାରି ପଚାରି ନିର୍ମଳାର ଘରେ ପହଞ୍ଚିଲି । ସେଠି ତାର ମା' ଭାଇ ଇତ୍ୟାଦି ମଧ ଥାଆନ୍ତି । ଭାଗ୍ୟକୁ ନିର୍ମଳା ଘରେ ଥିଲା । ମୋତେ ଦେଖିଲାକ୍ଷଣି ତା ଆଖି ହଠାତ୍ ଉଜ୍ଜ୍ୱଳ ହୋଇଗଲା । ତା'ପରେ ପରେ ଏକ ଭୟର ଛାୟା ମାଡିବସିଲା । ମୁଁ ସମସ୍ତଙ୍କ ଆଗରେ ପରିଚୟ ଓ ନିର୍ମଳାର ସେବାର ବିସ୍ତୃତ ବର୍ଣ୍ଣନା ଦେଇ ଉପହାରଗୁଡ଼ିକୁ ସମସ୍ତଙ୍କ ଆଗରେ ଦେଲି । ଔପଚାରିକ କିଛି କଥାବାର୍ତ୍ତା ପରେ ମା' ଭିତରକୁ ଚା' ବନ୍ଦୋବସ୍ତ କରିବାକୁ ଗଲା ଓ ଭାଇ ମଧ ବଜାରକୁ ଗଲା ମିଠା ଆଣିବା ପାଇଁ । ଏକୁଟିଆ ହେବା ମାତ୍ରେ ନିର୍ମଳା ପଚାରିଲା, 'କାହିଁକି ଆସିଲ ? ଏହାର ଫଳ କ'ଣ ହେବ ବୁଝୁଛ ।'

'ମୁଁ କହିଲି ଯେ ମୋର ଫଳ ଫୁଲ ଉପରେ ଉପସ୍ଥିତ କୌଣସି ଆଗ୍ରହ ନାହିଁ । କିନ୍ତୁ ମୁଁ ଗୋଟିଏ ପ୍ରଶ୍ନର ଉତ୍ତର ଚାହେଁ । ହସ୍ପିଟାଲ୍‌ରେ ମୋତେ ଏପରି କାହିଁକି ଚାହୁଁଥିଲ ?'

'ନିର୍ମଳା ଅତିରିକ୍ତ ଆତୁର ହୋଇ ପଡ଼ିଥିଲା ପରି ଜଣା ପଡୁଥିଲା । ଦୁଇ ତିନିଥର ଛେପ ଢୋକି ତା'ପରେ କହିଲା, 'ତୁମକୁ ଦେଖିବାକୁ ଭାରି ଭଲ ଲାଗେ ।' ଦୀପକ କହିଲା, 'ଭାଇ ସରଳ ଜିନିଷର ଉତ୍ତର ଦେବା ପ୍ରାୟ ଅସମ୍ଭବ । ତାର ଉତ୍ତରକୁ ବିରୋଧ କରିବାର କୌଣସି ଭାଷା ମୋ ମୁଣ୍ଡକୁ ଆସିଲା ନାହିଁ, ତା ଭିତରେ ମିଠା ଆସିଗଲା ଓ ଚା'ର ବ୍ୟବସ୍ଥା ହେଲା । କିଛି ସାମାନ୍ୟ କଥାବାର୍ତ୍ତା ପରେ ଚାଲି ଆସିଲି । ଆଉ ଦିନେ ମେଡିକାଲ ସାର୍ଟିଫିକେଟ ଓ ବିଲ୍ ଆଣିବା ବାହାନାରେ ହସ୍ପିଟାଲ ଗଲି ନିର୍ମଳାକୁ ଦେଖିବାକୁ । ମୁଁ ବୁଝିପାରୁନି ମୋର କ'ଣ ହୋଇଗଲାଣି । ମୋତେ ଲାଗୁଛି ଯେପରି ମୋ ଉପରେ ଆଉ ଗୋଟିଏ ଶକ୍ତି ମାଡ଼ି ବସିଛି ଏବଂ ମୋ ଉପରେ ମୋର ନିୟନ୍ତ୍ରଣ କ୍ରମଶଃ କମି ଯାଉଛି ।'

ମୁଁ ତାକୁ କହିଲି ଯେ ଶୀଘ୍ର କଲିକତା ଅଫିସ୍‌କୁ ଟୁରରେ ଯାଆ ଏବଂ ତା ପରେ ଘରକୁ ଜଳନ୍ଧର । ସେଠି ଝିଅ ଦେଖ । ଅତି କମ୍‌ରେ ଏ ଜାଗା ଏ ପରିବେଶରୁ ତିନିମାସ ଦୂରରେ ରହ । ଦୀପକ ମୋ କଥାରେ ରାଜି ହେଲା । ସେ ମଧ କହିଲା ଯେ ତାକୁ ଅତ୍ୟନ୍ତ ଅସ୍ୱସ୍ତିକର ଲାଗୁଛି । ସେ ମଧ ନିଜ ଉପରେ କର୍ତ୍ତୃତ୍ୱ ଫେରି ପାଇବାକୁ ଚାହେଁ ।

ତା'ପରେ ଆମେ ଅଲଗା ଅଲଗା ହୋଇଗଲୁ । ମୋର ଇଉନିଟ୍ ଚାଲିଗଲା ଅହମଦାବାଦ୍ । ଇଉନିଟ୍ ମୁଭ୍‌ମେଣ୍ଟ ପରେ ମୁଁ ସର୍ଭେ ଅଫ୍ ଇଣ୍ଡିଆକୁ ଚାଲିଗଲି । ଏଇ ଦୁଇ ବର୍ଷ ତଳେ ମୁଁ ଦିଲ୍ଲୀ କାମରେ ଆସିଥାଏ । ସେ ସମୟରେ ଦିନେ ଖବର କାଗଜରେ ଏକ ଲେଖା ଦେଖିଲି ଚା' ସମ୍ବନ୍ଧରେ । ଲେଖକ ଦୀପକ ଆରୋରା । ସେଥିରେ ସେ କହିବାକୁ ଚାହୁଁଥିଲା ଯେ ଫ୍ରାନ୍ସରେ ଯେତେ ପ୍ରକାର ୱାଇନ୍ ଅଛି ଭାରତବର୍ଷରେ ଚା'ଠାରୁ ବେଶି

ପ୍ରକାରର ଚା' ଅଛି । ଚା' ଆମେ ପ୍ରତିଦିନ ଗିଳୁଛୁ । କିନ୍ତୁ ଚା ଖାଇ ଜାଣିନୁ ଏବଂ ସେଥିଲାଗି ବୃକ୍‌ବଣ୍ଡ ଇତ୍ୟାଦି ବଡ଼ କମ୍ପାନୀ ଦାୟୀ । ସେମାନେ ପ୍ୟାକେଟ ଚା ଦ୍ୱାରା ଲୋକଙ୍କ ରୁଚି ଖରାପ କରି ଦେଇଛନ୍ତି ଇତ୍ୟାଦି । ମୋର କୌତୂହଳ ହେଲା ଏ କ'ଣ ସେହି ଦୀପକ । ତା ଆରଦିନ ଆଉ ଏକ କାଗଜରେ ଏକ ବିଜ୍ଞାପନ ଦେଖିଲି । ଟି' ରୁମ୍ ବୋଲି ଏକ ଦୋକାନର । ସେଠି କୁଆଡେ ପଚାଶ ରକମର ଚା' ମହଜୁଦ୍ ଥାଏ । ତା ଛଡ଼ା ରେସ୍ତୋରାଁ ମଧ୍ୟ । ମୁଁ ମଧ୍ୟ ଅନେକ ଦିନରୁ ଭଲ ଆସାମ ଚା' ଖାଇ ନଥିଲି । ଏଣୁ ଦିନେ ଶନିବାର ସକାଳ ପ୍ରାୟ ସାଢେ ଦଶଟା ବେଳେ ଟି' ରୁମ୍‌ରେ ପହଞ୍ଚିଲି । ଅତି ସୁନ୍ଦର କଳାତ୍ମକ ଭାବରେ ସଜା ହୋଇଥିବା ଦୋକାନ ଓ ରେସ୍ତୋରାଁ । ମାଲିକ ମୋ ଆଡକୁ ଆଗେଇ ଆସିଲେ । ଏ ଦୋକାନ ଦୀପକର ଏବଂ ସେ ଚା' ସମ୍ବନ୍ଧରେ ପ୍ରବନ୍ଧଟା ମଧ୍ୟ ଲେଖିଥିଲା । ତାର ଏହା ସହିତ ଚାର ପାଇକାରି ବ୍ୟବସାୟ ମଧ୍ୟ ଅଛି । ତା ପରେ ଦୁହେଁ ରେସ୍ତୋରାଁର ଗୋଟିଏ କୋଣରେ ବସିଲୁ ।

ମୁଁ ପଚାରିଲି, ଚାକିରୀ କାହିଁକି ଛାଡିଲୁ । ଥିଲେ ତ ମ୍ୟାନେଜର ହୋଇ ସାରନ୍ତୁଣି । ତୁମ କମ୍ପାନୀରେ ତ ମ୍ୟାନେଜର ବିକ୍ରି ଉପରେ କମିସନ ମଧ୍ୟ ପାଏ ?

ଦୀପକ କହିଲା, 'ତା କ'ଣ ତୁ ଅନୁମାନ କରିପାରୁ ନାହୁଁ । ମୁଁ ହାବୁ ଡୁବୁ ଖାଇ ଏତେ ବ୍ୟସ୍ତ ହୋଇ ପଡ଼ିଥିଲି ଯେ ଶେଷକୁ ଠିକ୍ କଲି ବୁଡିଯିବା ହିଁ ଶ୍ରେୟସ୍କର । ତୋ କଥା ମାନି ମୁଁ କଲିକତା ଓ ଘରକୁ ଗଲି । କିନ୍ତୁ ସେ ଆଖି ଭୁଲି ପାରିଲି ନାହିଁ । ଘରେ ରହିପାରିଲି ନାହିଁ । ବୋଧହୁଏ ଏହା ହିଁ କାମରୂପ ଯାଦୁ ଯେଉଁଥିରେ ଭେଣ୍ଡା ମେଣ୍ଢା ହୋଇଯାଏ । ମୋ ଅବସ୍ଥା ସେ ମେଣ୍ଢାଠାରୁ ଭଲ ନଥିଲା । ବମ୍ବେ ଗଲି । ସେ ସହରର କୁଆଡେ ଆଉ ଏକ ପ୍ରକାର ଯାଦୁ ଅଛି । ସେଠିକି ଯେ ଯାଏ ସେଠୁଁ ବାହାରି ପାରେ ନାହିଁ । କାରଣ ତାକୁ ଲକ୍ଷପତି ହେବାର ଭୂତ ଗ୍ରାସି ଦିଏ । ମୁଁ ବି ବ୍ୟବସାୟୀ ମହଲରେ ବୁଲାବୁଲି କଲି, ଦେଖିଲି ଚା' ବ୍ୟବସାୟ ଲାଗି ସୁଯୋଗ ଅଛି । ଜଣେ ଅଧେ ବ୍ୟବସାୟୀଙ୍କୁ ସାହାଯ୍ୟ କଲି । ମୁଁ ତ ଯେତେହେଲେ ଚା' କ'ଣ ଜାଣେ । ଉଚିତ୍ ଦାମ୍ କ'ଣ ମୁଁ ଦେଖି କହିଦେଲି । କୌଣସି ବ୍ୟବସାୟୀଙ୍କୁ tasting ଦ୍ୱାରା ଉଚିତ୍ ଦାମ୍ ବତାଇ ଦେଲି । ଏକପ୍ରକାର ଜଣା ପଡୁଥିବା ଚା'ର ଦରଦାମ୍‌ରେ ଏତେ ତାରତମ୍ୟ ହୋଇପାରେ ସେମାନେ ମଧ୍ୟ ଆଶ୍ଚର୍ଯ୍ୟ । କିନ୍ତୁ ବମ୍ବେରେ ରହିପାରିଲିନି । ସମୟଟା ଅତି କଷ୍ଟଦାୟକ ହୋଇଥିଲା । କୌଣସି ଉପାୟରେ ସେ ଆଖିକୁ ଭୁଲି ପାରିଲି ନାହିଁ ।

''ତା ପରେ ମୁଁ ଆସାମ ଫେରିଗଲି । ମୁଁ ବୁଝି ପାରିଥିଲି ଯେ ମୁଁ ଏକ ପ୍ରବଳ ସ୍ରୋତରେ ପଡିଯାଇଛି, ଏବଂ ମୋର ସମସ୍ତ ଚେଷ୍ଟା ସତ୍ତ୍ୱେ ମୁଁ ଏଥିରୁ ବାହାରି ପାରିବିନାହିଁ । ଏହି ସ୍ରୋତ ମୋତେ ଟାଣିନେବ ଏବଂ ଭଉଁରିରେ ବୁଡାଇ ଦେବ । ଏଣୁ ମୋର ସେ ଶକ୍ତି ସଙ୍ଗେ

ଇଚ୍ଛିବା ବୃଥା । ମୋର ନିଜ ଉପରେ କର୍ତ୍ତୃତ୍ୱ ଆଉ ନାହିଁ । ପହଞ୍ଚି ନିର୍ମଳା ସାଙ୍ଗେ ଦେଖା କଲି । ସ୍ପଷ୍ଟ ଯେ ସେ ଯେତିକି ଖୁସି ହୋଇଛି ତା ଅପେକ୍ଷା ଡରୁଛି ବେଶି । ସେ ମଧ କ୍ରମଶଃ ବେପରୁଆ ହୋଇ ଯାଉଥିଲା । ଦିନେ ମୁଁ ପଚାରିଲି, 'ବଙ୍ଗଳାକୁ ଯିବା ?' ସେତେବେଳେ ସନ୍ଧ୍ୟାବେଳ ଏବଂ ବଙ୍ଗଳାକୁ ଗଲେ ଫେରିବାକୁ ନିଶ୍ଚୟ ରାତି ହେବ ଏବଂ ମୋ ଗାଡ଼ି ଛଡ଼ା ଫେରିବାର ଅନ୍ୟ କୌଣସି ଉପାୟ ନାହିଁ । ନିର୍ମଳା ମୋର ହାତ ପାପୁଲିକୁ ଜୋର୍‌ରେ ଧରି ପକାଇ କହିଲା, 'ଚାଲ । କେତେ ଡରିବି । ଆଉ ସୁବନସିରୀ ନଈ ତ ଅଛି, ଯଦି ଆଶ୍ରୟ ଦରକାର ହୁଏ' ।

'ତା'ପରେ ମୋ ହାତ ଜାବୁଡ଼ି ଧରି କହିଲା, 'ନା-ନା ତା ହୋଇପାରିବ ନାହିଁ । ତା ଦ୍ୱାରା ତୁମର କ'ଣ ହେବ । ମୁଁ ମଧ ଚା' ସମାଜର । ମୁଁ ସବୁ ବୁଝୁଛି । ସେ ଦିନ ଆଉ ଯିବା ହେଲାନାହିଁ ।'

'ଏହା ପରେ ପ୍ରାୟ ମାସେ କାମରେ ନିଜକୁ ବୁଡ଼ାଇ ରଖିଲି । ଆଉ ନିର୍ମଳା ପାଖକୁ ଯାଇନାହିଁ କିନ୍ତୁ ତାକୁ ଆଉ ମୋଟେ ଭୁଲି ପାରିଲି ନାହିଁ । କ୍ରମଶଃ ସ୍ପଷ୍ଟ ହେଲା ସେ କୌଣସି ସ୍ତ୍ରୀ ସହିତ ଯଦି ମୁଁ ମୋ ଜୀବନ ଯୋଡିବାକୁ ଚାହେଁ, ନିର୍ମଳା ସେହି ସ୍ତ୍ରୀ । ତା ପାଖରେ କ'ଣ ଅଛି ମୁଁ ଜାଣେ ନାହିଁ । କିନ୍ତୁ ଯାହା ଅଛି ତା ମୋର ଏକାନ୍ତ ଦରକାର ।'

'ମୁଁ ବୁଝିପାରୁଥିଲି ଯେ ମୋ ପଛରେ ଫୁଟ୍ ଫାଟ୍ ଆରମ୍ଭ ହୋଇଗଲାଣି । କିନ୍ତୁ ମୁଁ ବେପରୱା । ମୁଁ ଠିକ୍ କରି ସାରିଥିଲି ଯେ ନିର୍ମଳାକୁ ବାହା ହେବି ଏବଂ ତା ପରେ ହିନମାନ୍ ହୋଇ ବଗିଚାରେ ରହିବିନି । ମୁଁ ପଞ୍ଜାବୀ କ୍ଷତ୍ରୀ ପିଲା । ସାତପୁରୁଷର ବ୍ୟବସାୟୀ । ମୁଁ ଜାଣେ ଯେ ଚା' ବ୍ୟବସାୟରେ ଖାଉଟିକୁ ଖୁବ୍ ଠକାଯାଏ କାରଣ ମଧବର୍ତ୍ତୀ ଅନେକ । ମୁଁ ତ ବଗିଚା ମାନଙ୍କରୁ ସିଧା ଚା' କିଣି ଜଳନ୍ଧର ଅମୃତସର ପଠାଇ ପାରିବି । ଏଥର ବୁଲାବୁଲି କରି ମଧ ମୁଁ ବୁଝିପାଇଥିଲି । କୌଣସି ଅକ୍‌ସନ୍ ହାଉସ୍ (Auction House) ରେ ରହିବି ନହେଲେ ସିଧା ବ୍ୟବସାୟ କରିବି ।

'ଏ ସମୟରେ ମୋ କପାଳକୁ ଏକ ଅଫର ଆସିଲା । ଚା' ରପ୍ତାନୀକାରୀମାନଙ୍କ ମଧରେ କଲିକତାର ଆରାତୁନ୍ ବ୍ରଦର୍ସର ବେଶ୍ ନାଁ ଅଛି । ସେମାନେ ହେଲେ ଆର୍ମେନିଆନ୍ ସମ୍ପ୍ରଦାୟର । ଏଣୁ ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଶ୍ରଣ । ପାରସୀଙ୍କ ଭଳିଆ । ସେ ବଗିଚାକୁ ଚା' କିଣିବାକୁ ଆସିଥିଲେ । ସାଙ୍ଗରେ ଆସିଥିଲା କଲିକତାରୁ ଟି'ଟେଷ୍ଟର । କିନ୍ତୁ ମୁଁ ମଧ ଟି-ଟେଷ୍ଟିଂ ଜାଣେ । ଏଥିରେ ଚା' ପାଣି କୁଳୁକୁଞ୍ଚା କରି ବାହାର କରିଦିଆଯାଏ । ତା ପରେ ଟେଷ୍ଟର ଚା'ର ଦାମ୍ କେତେ ହେବା ଉଚିତ୍ କହିଦିଏ । ମୁଁ ଟେଷ୍ଟରକୁ କେତେ ବିଷୟରେ ଚାଲେଂଜ୍ କଲି । ଆରାତୁନ ତାକୁ ନେଇକରି ଆସିଛନ୍ତି ଦିନକୁ ଦେଢହଜାର ଫି' ଦେଇ । ଗଲାବେଳକୁ ଆରାତୁନ ତାଙ୍କ କାର୍ଡଟା ଦେଇ ଗଲେ । କିଛି କହିଲେ ନାହିଁ କାରଣ କଥା

ହେଲେ ତ କଲିକତାରେ ହେବ ।

'ମୁଁ ଏହାପରେ ଡାକ୍ତର ଦେଖାଇବି ବୋଲି କଲିକତା ଗଲି । ଚା' ବଗିଚା ମହଲରେ ବିଶ୍ୱାସ ଯେ ଭଲ ଡାକ୍ତର କେବଳ କଲିକତାରେ । ଡାକ୍ତର ହଜାରିକା ଗୋଟେ ରେଫରେନ୍ସ କରିଦେଲେ । ମୁଁ କଲିକତା ଯାଇ କମ୍ପାନୀ ସ୍ପେସାଲିଷ୍ଟ ସାଙ୍ଗରେ ଦେଖାକଲି । କିନ୍ତୁ ତା ଠାରୁ ବେଶି ଗୁରୁତ୍ୱପୂର୍ଣ୍ଣ ଆରାତୁନ ସାହେବ ସାଙ୍ଗେ ଦେଖା । ସେ ମୋତେ ଅଫର୍ ଦେଲେ ଦରମା ଚାରି ହଜାର ଓ ଫ୍ଲାଟ୍ । ମୁଁ ବେଶ୍ ଦରଦାମ୍ କଲି । ତେବେ ଏଇଠି ଛିଡ଼ିଲା । କିନ୍ତୁ ମୋତେ ମଧ ତିନି ମାସ ନୋଟିସ୍ ଦେବାକୁ ପଡିବ । ଏଣୁ ଆସନ୍ତା ଏପ୍ରିଲ ଜଏନ କରିବି ବୋଲି କହିଗଲି । ଏହା ଫଳରେ ମୋର ଦରମା ସୁବିଧା ଅନେକ କମ୍ ହେବ ସତ । କିନ୍ତୁ ନିର୍ମଳାକୁ ଯଦି ପାଇପାରେ ।

'ଫେରିଯାଇ ନିର୍ମଳାକୁ ପଚାରିଲି । ସେ ଭାବିପାରି ନଥିଲା ଯେ ମୁଁ ତାକୁ ବାହା ହେବାର ପ୍ରସ୍ତାବ ଦେବି । ସେ ତ ଭୋ ଭୋ ହୋଇ କାନ୍ଦି ପକାଇଲା । ନା, ସେ ବୁଡ଼ି ମରିବ ପଛେ ମୋର କ୍ଷତି ହେବାକୁ ଦେବ ନାହିଁ । ସେ ଜାଣିଛି ଷ୍ଟାଫ୍ ଶ୍ରେଣୀର ଝିଅ ବାହା ହେଲେ, ଅଫିସରଙ୍କ ଅବସ୍ଥା କ'ଣ ହୁଏ । ପୁଣି ସେ ଝିଅକୁ ମଧ ଚରମ ଅପମାନ କରିବାର ଚେଷ୍ଟା କରାଯାଏ ଇତ୍ୟାଦି । ତାକୁ ବହୁତ ବୁଝାଇଲି ଯେ ଚା' ବଗିଚା ବାହାରେ ମଧ ଏକ ଦୁନିଆଁ ଅଛି । ଆମେ ଏଠା ଛାଡି ଚାଲିଯିବା । ତାର ସମ୍ମତି ମାଗିଲି । ସେ ଉତ୍ତର ଦେଲା ଯେ ବୁଡି ମରିବା ଲୋକ ପକ୍ଷରେ ସାତ ହାତ ପାଣି ଯାହା, ସତୁରି ହାତ ପାଣି ସେଇଆ । ନିର୍ମଳା ହିନ୍ଦୁ । ଏଣୁ ଆର୍ଯ୍ୟ ସମାଜ ମତରେ ଆମେ ବାହା ହୋଇପାରିବା ।

'ଏହା ପରଠୁ ନିର୍ମଳା ବଙ୍ଗଳାକୁ ଆସିବା ଆରମ୍ଭ କଲା । ଦିନେ କହିଲା, 'ସତରେ ଏ ଘର, ବଗିଚା ଦେଖି ଲୋଭ ଲାଗୁଛି ।' ମୁଁ କହିଲି, 'ମନରୁ ସେ ଦୁର୍ବଳତା ବାହାର କରିଦିଅ । ଆମକୁ ସହରକୁ ଯିବାକୁ ହେବ ଏବଂ ଏକ କ୍ଷୁଦ୍ର ଫ୍ଲାଟରେ ଜୀବନ କାଟିବାକୁ ହେବ । ତୁମେ ମଧ ନିଜର ଲୋକଙ୍କଠାରୁ ଦୂରରେ ରହିବ । ଏଥିଲାଗି କେତେଦୂର ପ୍ରସ୍ତୁତ ?'

'ନିର୍ମଳା କହିଲା, 'କାହିଁକି ବାଜେ କଥା କହୁଛ । ତା ସବୁ ତ ହେବ । ସେ ଦୁଃଖ ତ ନିଶ୍ଚିତ । କିନ୍ତୁ ମୁଁ ତ ଜାଣି ଶୁଣି ରାଜି ହୋଇଛି । କାରଣ ତୁମକୁ ନାହିଁ କରି ମୁଁ ବଞ୍ଚି ପାରିବି ନାହିଁ ।' ଦିନେ ସେହି ଶୁଭଲଗ୍ନ ଉପସ୍ଥିତ ହେଲା । ଅର୍ଥାତ୍ ଜେନେରାଲ ମ୍ୟାନେଜର ଡକାଇ ପଠାଇଲେ । ଦୁଇ ଚାରିଟା କଥା ପରେ ନିର୍ମଳା କଥା ଉଠାଇ ପୁଣି ଥରେ ଭାବି ଦେଖିବାକୁ କହିଲେ । ମୁଁ କହିଦେଲି ଯେ ନିର୍ମଳାକୁ ତ ମୁଁ ବାହା ହେବି । ଯେହେତୁ ନିର୍ମଳା ଆପଣମାନଙ୍କ ମତରେ ଉପଯୁକ୍ତ ମ୍ୟାନେଜମେଣ୍ଟ ୱାଇଫ୍ ହୋଇପାରିବ ନାହିଁ, ତା ପକ୍ଷରେ ଓ ମୋ ପକ୍ଷରେ ମଧ ଏଠି ଏକ ବିରାଟ କୁଣ୍ଠା ସୃଷ୍ଟି ହେବ । ଏଣୁ ମୁଁ ନିଜ ତରଫରୁ ଚାକିରିରୁ ଇସ୍ତଫା ଦେବା ପାଇଁ ତିନି ମାସର ନୋଟିସ୍ ଦେଉଛି ।

'ଜେନେରାଲ ମ୍ୟାନେଜରଙ୍କ ମୁଣ୍ଡ ଉପରୁ ମସ୍ତ ବୋଝ ଉଠିଗଲା । ବିଚରା ବଡ ଭଦ୍ରଲୋକ । ପ୍ରକୃତ, ଜେଣ୍ଟଲ୍‌ମ୍ୟାନ । କଟୁ କର୍ତ୍ତବ୍ୟଟା, ମୁଁ ଛିଡ଼ାଇ ଦେବାରୁ ଗଦ୍‌ଗଦ୍ ହୋଇଗଲେ । ମୋ ସାଙ୍ଗରେ ଭବିଷ୍ୟତ ବିଷୟରେ କଥାବାର୍ତ୍ତା ହେଲା । ମୁଁ ଚାର ପାଇକାରି ବ୍ୟବସାୟ କରିବି ଶୁଣି ସମସ୍ତ ପ୍ରକାର ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଲେ ।

'ତା'ପରେ ପାଞ୍ଚବର୍ଷ ଆରାତୁନ ପାଖେ କାମ କଲି । ଏବେ ମୋର ସମସ୍ୟା ହେଲା ଯେ ଘରେ କାହାର ମନ ପାଇଲାନି । ପୁଅ ଏ କି ବୋହୂ ଆଣିଲା । ରୂପ ନାହିଁ କି ଧନ ଆଣିନି । ତେବେ ମୁଁ ଆଉ ବିଶେଷ ଭାବିଲିନି । ଥରେ ଅଧେ ବାପାଙ୍କ ସାଙ୍ଗେ ବଚସା ହେଲା । ମୁଁ ସଫା କହିଦେଲି ଯେ ସାତ ବର୍ଷ ହେଲା ମୁଁ ବିବାହଯୋଗ୍ୟ ହୋଇ ସାରିଥିଲି । କିନ୍ତୁ ଘର ଆଡୁ କୌଣସି ଚେଷ୍ଟା କରାଯାଇ ନାହିଁ । ନିର୍ମଳାକୁ ମୁଁ ଭଲ ପାଇ ବାହା ହୋଇଛି । ମୁଁ ନିର୍ମଳା ଠାରେ କ'ଣ ଦେଖିଲି ତା ମୁଁ ଜାଣେ । ଅନ୍ୟମାନଙ୍କ ଜାଣିବା ଦରକାର ନାହିଁ । ଏପରି ହେବ ବୋଲି ତ ମୁଁ ମଧ ଜାଣିଥିଲି । ମୋଟାମୋଟି ନିର୍ମଳା ତା ବନ୍ଧୁବାନ୍ଧବଙ୍କ ଠାରୁ ଏବଂ ମୁଁ ମଧ ମୋର ସମ୍ପର୍କୀୟଙ୍କଠାରୁ ବେଶ୍ ଅଲଗା ହୋଇପଡିଲୁ । ଆରାତନଠାରୁ ଚାଲିଆସି ସ୍ୱାଧୀନ ବ୍ୟବସାୟ ଆରମ୍ଭ କଲି, ସେଇଟା ମୋଟାମୋଟି ଚାଲିଛି, ଏଇଟା ଅର୍ଥାତ୍ ଟି ରୁମ୍ ମୋର ଏକ ସଉକ ବା hobby, ଆଗେ ତ କିଛି ହେଉ ନଥିଲା । କିନ୍ତୁ ବର୍ତ୍ତମାନ କଷ୍ଟମର ହେଲେଣି । ରହେ ଚଣ୍ଡିଗଡ଼ରେ ଏବଂ ସପ୍ତାହକେ ଦୁଇଦିନ ଦିଲ୍ଲୀ ଆସି ଏଠା କାମ ଦେଖିଯାଏ ।'

ମୁଁ ପଚାରିଲି, 'ତୋର ସ୍ତ୍ରୀ ଏଠି ଅଛି ନା ଚଣ୍ଡିଗଡ଼ରେ' । ଦୀପକ କହିଲା, 'ସେ ମୋ ପାଖରେ ଚଣ୍ଡିଗଡ଼ରେ ଥାଏ । ତେବେ ଏଥର ଦିଲ୍ଲୀ ଆସିଛି ପିଲାଙ୍କୁ ନେଇ । ଡେଣ୍ଟିଷ୍ଟ୍ ପାଖରେ କାମ ଅଛି । ଝିଅର ଦାନ୍ତରେ ବ୍ରେସ୍ ଲାଗିବ । ଏହି ଅଳ୍ପ ସମୟ ପରେ ଆସିବ । ତା ପରେ ଆମେ ପରସ୍ପରର ନିଜର ଓ ପରିଚିତମାନଙ୍କ ଖବର ନେଉ ନେଉ ଶ୍ରୀମତୀ ଅରୋରା ଅର୍ଥାତ୍ ନିର୍ମଳା ଦୁଇ ପିଲାଙ୍କୁ ଧରି ଆସି ପହଞ୍ଚିଲେ । ତାକୁ ତ ଦେଖିଥିଲି ଚଉଦ ବର୍ଷ ତଳେ ଗୋଟିଏ ଟେକି ନର୍ସ ହିସାବରେ ମାଲିବାଡି ହସ୍‌ପିଟାଲରେ । ସେତେବେଳେ ସେ ଯେପରି ଗୋଟିଏ ଉଦ୍ଦାମ ପାହାଡ଼ି ଝରଣା । ଏଥର ସେ ଶରତକାଳର ନଦୀ । ପୂର୍ଣ୍ଣ, ଶାନ୍ତ । ଶ୍ୟାମଳୀ ଯମୁନା । ଦୀପକ ପରିଚୟ କରାଇଦେଲା, 'ନିର୍ମଳା, ଗିରିର ନାଁ ଶୁଣିଛ । ସେତେବେଳେ ତାକୁ ଜାଣିଥିଲ ବଗାହଟ୍ କ୍ୟାମ୍ପର ଓ.ସି. ସାହେବ ବୋଲି । ବର୍ତ୍ତମାନ, କର୍ଣ୍ଣେଲ ଓ ସର୍ଭେ ଅଫ୍ ଇଣ୍ଡିଆରେ ଡେରାଡୁନ୍‌ରେ ଅଛନ୍ତି ।'

ନିର୍ମଳା ମୁହଁରେ ପରିଚୟର ଚିହ୍ନ ଦେଖାଗଲା । ପଚାରିଲା, 'ଆପଣ ବୋଧେ ହସ୍‌ପିଟାଲରେ ତାଙ୍କୁ ଦେଖିବାକୁ କେତେଥର ଯାଇଥିଲେ ?'

ମୁଁ କହିଲି, 'ହଁ ସେଠି ଆପଣଙ୍କୁ ମଧ ଦେଖିଥିଲି ।'

ନିର୍ମଳାର ମୁହଁରେ ଏକ ବିଚିତ୍ର ଆଭା ଖେଳିଗଲା । ପ୍ରଣୟର ପ୍ରଥମ ଦମକା ହାୱାରେ ତାର ପରିଚିତ ଜୀବନର ଝୁଣା ପତ୍ର ସବୁ ଉଡ଼ିଯିବାର ସ୍ମୃତି । ସେହି ବିପ୍ଳବ ପରେ ଅନ୍ୟ ସୃଜନ ହୋଇଛି । କିନ୍ତୁ ବିପ୍ଳବ ତ ବିପ୍ଳବ । ସେ ଅନୁଭୂତି ସବୁଠାରୁ ସ୍ୱତନ୍ତ୍ର ଓ ଅନନ୍ୟ ତା ପରେ ପୁଣି ସେହି ଶାନ୍ତ ସ୍ନିଗ୍ଧ ଚାହାଣି । ସେହି ଶ୍ୟାମଳ ନାରୀର ଉପସ୍ଥିତି ହିଁ ବାତାବରଣରେ ଏକ ପୂର୍ଣ୍ଣତା ଆଣି ଦେଇଥିଲା । ନିର୍ମଳା ଓ ଦୀପକର ଆତିଥ୍ୟ ଅନେକ ଥର ଗ୍ରହଣ କରିଛି । ନିର୍ମଳାକୁ ଦେଖି ବୁଝିଲି ଯେ ବ୍ୟକ୍ତିତ୍ୱର ପ୍ରକାଶ କିପରି ରୂପର ଅଭାବକୁ ଜିଣିପାରେ । ରୂପସୀ ଓ ସୁନ୍ଦରୀ ମଧ୍ୟରେ ପାର୍ଥକ୍ୟ ଯେ କଣ, ତାର ଉଦାହରଣ ନିର୍ମଳା ।

କର୍ଣ୍ଣେଲ୍ ଚୁପ୍ ହେଲେ । ଆଉ ସମସ୍ତେ ମଧ୍ୟ ଚୁପ୍ । ପ୍ରଫେସର ମହାନ୍ତି ନୀରବତା ଭାଙ୍ଗି କହିଲେ, 'ଏହି ହେଲା ରବିନ୍ଦ୍ରନାଥଙ୍କ ଭାଷାରେ ବଧୂ ସୁନ୍ଦରୀ । କାରଣ ସେ ତାର ବଲ୍ଲଭର ଚକ୍ଷୁରେ ନୀଳ ଆକାଶର ସ୍ୱପ୍ନର ଅଂଜନ ଆଙ୍କି ପାରିଛି । ଆଜି ସେହି କବିତାଟିର ଅର୍ଥ ଠିକ୍ ବୁଝାଗଲା । ନିର୍ମଳା ଅବଶ୍ୟ ରୂପସୀ ନୁହେଁ । କିନ୍ତୁ ସେ ବଧୂ, ସେ ସୁନ୍ଦରୀ ।'

